# ହିଂସାର ମୁକାବିଲା

ଲେଖକ :
**ମନମୋହନ ଚୌଧୁରୀ**

ପ୍ରକାଶକ :
**ଉତ୍କଳ ଗାନ୍ଧୀ ସ୍ମାରକ ନିଧି**
**ବାଖରାବାଦ, କଟକ-୨**

# ହିଂସାର ମୁକାବିଲା

ଲେଖକ :

ମନମୋହନ ଚୌଧୁରୀ

ପ୍ରକାଶକ :

ଉତ୍କଳ ଗାନ୍ଧୀ ସ୍ମାରକ ନିଧି

ବାଖରାବାଦ, କଟକ-୨

# ପ୍ରକାଶକଙ୍କ କଥା

ଶ୍ରୀ ମନମୋହନ ଚୌଧୁରୀଙ୍କର ଲିଖିତ 'ହିଂସାର ମୁକାବିଲା' ପୁସ୍ତିକା ପ୍ରଥମେ ମୂଳ ହିନ୍ଦୀରେ ସର୍ବ ସେବା ସଂଘ ପ୍ରକାଶନ ପ୍ରକାଶ କରିଥିଲେ । ଶ୍ରୀ ସୁଷମା ପାଣିଗ୍ରାହୀ ଏହାର ଓଡ଼ିଆ ଅନୁବାଦ କରିଦେବାରୁ ଆମେ ସେଥିପାଇଁ ତାଙ୍କଠାରେ କୃତଜ୍ଞ । ଆଜି ହିଂସା ମଣିଷ ଜାତିର ଗ୍ରୀବ ଉପରେ ମାଡ଼ି ବସିଛି ଓ ଦିନକୁ ଦିନ ଉଗ୍ରତର ହେବାରେ ଲାଗିଛି । ସାରା ପୃଥିବୀର ଲୋକେ ଏହାଦ୍ୱାରା ଆତଙ୍କିତ ଓ ବ୍ୟତିବ୍ୟସ୍ତ । ବିବିଧପ୍ରକାରର ହିଂସାର ମୁକାବିଲା ପାଇଁ ପୃଥିବୀରେ ନାନା ଆନ୍ଦୋଳନ ଚାଲିଛି । ଆମ ଦେଶର ସର୍ବୋଦୟ ଆନ୍ଦୋଳନର ତାହା ଭିତରେ ଏକ ମୁଖ୍ୟ ସ୍ଥାନ ରହିଛି । ଏସବୁ ଆନ୍ଦୋଳନ ପଛରେ ଗାନ୍ଧୀଜୀଙ୍କର ପ୍ରେରଣା ହିଁ କାମ କରୁଛି । ଅହିଂସା ଦ୍ୱାରା ହିଁ ହିଂସାର ମୁକାବିଲା କରାଯାଇ ତାକୁ ଲୋପ କରାଯାଇ ପାରିବ ବୋଲି ଦୃଢ଼ ବିଶ୍ୱାସ ନେଇ ବହୁଲୋକ ନୂଆ ଅହିଂସ ସମାଜ ଗଢ଼ିବା ପାଇଁ ଜୀବନପଣ କରି ଲାଗିଛନ୍ତି । ହିଂସା ବିରୋଧରେ ଲଢ଼ିବାକୁ ହେଲେ ତାର ବିବିଧ ରୂପ ଓ କାରଣ ପ୍ରଥମେ ଜାଣିବା ଆବଶ୍ୟକ । ଏ କ୍ଷୁଦ୍ର ପୁସ୍ତିକାଟି ସେଦିଗରେ ସାହାଯ୍ୟ କରିବ ଓ ଏ ବିଷୟରେ ଅଧିକ ଜ୍ଞାନ ଆହରଣ ପାଇଁ ପ୍ରେରଣା ଯୋଗାଇବ ବୋଲି ଆମେ ଆଶା କରୁଛୁ ।

ଉତ୍କଳ ଗାନ୍ଧୀ ସ୍ମାରକ ନିଧି

———

# ହିଂସାର ମୁକାବିଲା

ପ୍ରତ୍ୟୁଷରୁ ଖବରକାଗଜ ଖୋଲିବା ମାତ୍ରେ ବା ରେଡ଼ିଓର ନବ୍ ବୁଲାଇବା ମାତ୍ରେ, ଭାରତର ବିଭିନ୍ନ ସ୍ଥାନରେ ହିଂସାର ବହ୍ନି ଧକ୍ ଧକ୍ ହୋଇ ଜଳୁଥିବା ସମାଚାର ପ୍ରତ୍ୟହ ଆମର ଦୃଷ୍ଟି ଆକର୍ଷଣ କରୁଛି । ପଞ୍ଜାବରେ ଦଶଜଣ ଆତଙ୍କବାଦୀଙ୍କ ସହ ତିରିଶ ଜଣ ଲୋକଙ୍କ ହତ୍ୟା, କାଶ୍ମୀରରେ ବୋମା ବିସ୍ଫୋରଣରେ ସାତ ଜଣଙ୍କ ମୃତ୍ୟୁ, ଆସାମରେ ଉଲ୍‌ଫାମାନେ ଅଫିସରମାନଙ୍କୁ ଅପହରଣ କରି ନେବା, ଆନ୍ଧ୍ରରେ ନକ୍‌ସାଲବାଦୀଙ୍କ ସାଙ୍ଗରେ ପୋଲିସର ଖଣ୍ଡଯୁଦ୍ଧ, ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚାର ମୁକ୍ତି ଆନ୍ଦୋଳନର ଧମକ ଯାହା ହିଂସାକାଣ୍ଡର ରୂପ ନେଇ ପାରେ । ଏହିପରି ସବୁ ଦେଖିବାକୁ ଶୁଣିବାକୁ ମିଳିବ ।

ଏ ସମସ୍ତ ଖବର ପ୍ରତିଦିନ ପଢ଼ି ପଢ଼ି ଆମେ ଅଭ୍ୟସ୍ତ ହୋଇ ପଡ଼ିଲୁଣି, କେଉଁଠି ଦଶ କୋଡ଼ିଏ ଜଣ ମଲେଣି ତ ଏହା ଅତି ସାଧାରଣ ଘଟଣା ପରି ଲାଗୁଛି, ଆମେ ତାହା ଦେଖୁଛୁ, ଶୁଣୁଛୁ ଓ ସାଧାରଣ ଭାବେ ଗ୍ରହଣ କରୁଛୁ । ଯେପରି ଚାଉଳ ବା ଗହମ ଦର ବଢ଼ିବା କମିବା ବା କୌଣସି ଘର ଚୋରି କରିବା, ଭାଙ୍ଗିବା ପରି ଅତି ସାଧାରଣ କଥା ବୋଲି ମନେକରୁଛୁ । କିନ୍ତୁ ଗମ୍ଭୀର ଭାବେ ଚିନ୍ତା କଲେ, ଆମ ହିଂସା ଗ୍ରସ୍ତ ସ୍ଥାନର ଲୋକଙ୍କ ଜୀବନ ଯାତ୍ରା କିପରି ସଙ୍କଟମୟ ଓ ଦୁଃଖମୟ, ଓ କିପରି ଅନିଶ୍ଚିତତା ଭିତରେ ଦେଇ ଗତି କରୁଛି ତାହା ଜଣାପଡ଼ିବ । କେହି ଅଫିସ ବା ବଜାରକୁ ବାହାରିଲେ ତ, ପୁଣି ଘରକୁ ନିରାପଦରେ ଲେଉଟି ଆସିବାର ଠିକଣା ବା ଭରସା ନାହିଁ, ଘର ଉପରେ ଆକ୍ରମଣ କରି ପରିବାରର ସବୁ ଲୋକଙ୍କୁ ଗୁଳି କରି ମାରି ଶୁଆଇ ଦେବା ଘଟଣା ମଧ୍ୟ ଶୁଣୁଛୁ ।

କେତେକ ବିଶେଷ ସ୍ଥାନ ବା ରାଜ୍ୟରେ ଯେ ଏପରି ହିଂସ୍ର ବାତାବରଣ ଦେଖାଯାଉଛି ତାହା ନୁହେଁ, ଦେଶରେ ଅନ୍ୟ ରାଜ୍ୟମାନଙ୍କରେ ମଧ୍ୟ ହିଂସାର ପ୍ରାଦୁର୍ଭାବ କିଛି କମ୍ ନୁହେଁ । କେଉଁଠି ସାଂପ୍ରଦାୟିକ ଦଙ୍ଗାରେ ଲୋକଙ୍କୁ ହତ୍ୟା କରାଯାଉଛି ତ କେଉଁଠି ନିଆଁ ଲଗାଇ ଦିଆଯାଉଛି । କେଉଁଠି କୌଣସି କଥାକୁ ନେଇ ରାଗରେ ଲୋକେ ଭଙ୍ଗାରୁଜା କରୁଛନ୍ତି । ବସ୍‌ରେ ନିଆଁ ଲଗାଇ

ଦେଉଛନ୍ତି, ଗାଁମାନଙ୍କରେ ହରିଜନ ବସ୍ତି ଜଳାଇ ଦିଆଗଲଣି ତ କେଉଁଠି ଗୋଟିଏ ଜାତିର ଲୋକଙ୍କ ସଙ୍ଗେ ଅନ୍ୟ ଜାତିର ଲୋକଙ୍କର ସଂଘର୍ଷ ଘଟି ହତ୍ୟା ଓ ଲୁଟତରାଜ ଚାଲିଲଣି ।

ଏହା ସ୍ପଷ୍ଟ ଯେ, ଏହି ପ୍ରକାରର ହିଂସା ଓ ଅଶାନ୍ତି ଦେଶ ମଧ୍ୟରେ ଚାଲିଲେ ଲୋକଙ୍କ ଜୀବନଯାତ୍ରା ଦୁରୂହ ହୋଇଉଠୁଛି । ଏଣୁ ଦେଶ ଖଣ୍ଡ ବିଖଣ୍ଡିତ ହୋଇପାରେ । ନିଜ ନିଜ ଭିତରେ ଲଢ଼ାଇ କନ୍ଦଳର କାରଣ ଯୋଗୁଁ ଦେଶ ଦୁର୍ବଳ ହୋଇପଡ଼ିବ ଏବଂ ଏହାର ସୁଯୋଗ ନେଇ ଅନ୍ୟ ଦେଶ ଏହି ଦୁର୍ବଳତାର ଫାଇଦା ଉଠାଇବ ଏବଂ କୌଣସି ପଡ଼ୋଶୀ ଦେଶ ଭାରତ ମାଟିରୁ କୌଣସି ଅଂଶ ନିଜ ଅକ୍ତିଆରକୁ ଆଣିବାକୁ ଲାଳାୟିତ ହେବ ।

## ହିଂସାର କାରଣ

ହିଂସାକୁ ଲୋପ କରିବାକୁ ହେଲେ ଏହାର କାରଣ ଜାଣିବାକୁ ହେବ, ଏବଂ ସେ ସବୁ ଦୂର କରିବାର ଉପାୟ କଣ ତାହା ଜାଣିବାକୁ ହେବ । କାହାକୁ ଯଦି ଜ୍ୱର ହୁଏ, ତେବେ ଜ୍ୱର ହେବା ଭଲ ନୁହେଁ ବୋଲି ଖାଲି କହିଦେଲେ ଚଳିବ ନାହିଁ । ଏହା କି ପ୍ରକାରର ଜ୍ୱର—ଏବଂ ଏହାର ଚିକିତ୍ସା କିପରି ଭାବରେ ହେବ—ତାହା ଜାଣିବା ଓ କରିବା ଦରକାର । ହିଂସା ବିଷୟରେ ମଧ୍ୟ ଏହାହିଁ କଥା ।

ହିଂସାର କାରଣ ଖୋଜିବାକୁ ଗଲେ କେତେ ଗୁଡ଼ିଏ କାରଣ ଦୃଷ୍ଟିରେ ପଡ଼ିବ । ସେଗୁଡ଼ିକ ହେଲା :

୧ । ଭ୍ରାନ୍ତ ବିଶ୍ୱାସ ଯୋଗୁଁ ହିଂସା ।
୨ । ସମାଜ ଗଠନର ମୂଳଦୁଆରେ ଥିବା ହିଂସା ।
୩ । ଆର୍ଥିକ ବ୍ୟବସ୍ଥାର ମୂଳରେ ଥିବା ହିଂସା ।
୪ । ଶାସନର ଉତ୍ପୀଡ଼ନ ଯୋଗୁଁ ହିଂସା ।
୫ । ମାନବ ଚରିତ୍ରରେ ସହଜାତ ହିଂସା ।
୬ । ନ୍ୟାୟ ସଙ୍ଗତ ଦାବୀ ହାସଲ ନିମନ୍ତେ ହିଂସା ।

## ଭ୍ରାନ୍ତ ବିଶ୍ୱାସ

ସାରା ଦୁନିଆର ଲୋକଙ୍କ ମଧ୍ୟରେ ବର୍ତ୍ତମାନ ଏ ଭ୍ରାନ୍ତ ଧାରଣା ବ୍ୟାପି ଯାଇଛି ଯେ କିଛି ଲୋକେ ଉଚ୍ଚ ଓ କିଛି ନୀଚ । ୟୁରୋପ ଓ ଆମେରିକାରେ ମଧ୍ୟ ଏହି ଧାରଣା ଏପରି ବ୍ୟାପକ ଯେ, ଗୋରା ଲୋକେ କଳାରଙ୍ଗର ଲୋକଙ୍କଠାରୁ ନିଜକୁ ଶ୍ରେଷ୍ଠ ବୋଲି ଭାବନ୍ତି । ଏଥିପାଇଁ କଳା ଓ ହଳଦିଆ ରଙ୍ଗର ଅଣ-ୟୁରୋପୀୟ ମାନବବଂଶଙ୍କ ଉପରେ ରାଜତ୍ୱ କରିବା ନିଜର ଜନ୍ମଗତ ଅଧିକାର

ବୋଲି ଏକସମୟରେ ବିଶ୍ୱାସ କରୁଥିଲେ । ଏବେ ବି ସେମାନଙ୍କ ଭିତରୁ ବହୁ ଲୋକ ଏକଥା ବିଶ୍ୱାସ କରନ୍ତି । ଆମ ଦେଶରେ ମଧ୍ୟ ଏହିପରି ଧାରଣା ଅଛି । ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ପରି ଅବତାରଙ୍କ ରୂପ ଶ୍ୟାମଳ ଅଥବା କଳା ହେଲେ ମଧ୍ୟ ଆମେ ଗୋରା ରଙ୍ଗକୁ ଅଧିକ ପସନ୍ଦ କରୁ । ଜାତି ଭେଦ ଓ ଛୁଆଁ ଅଛୁଆଁ ଭାବର ଏହି ଉଚ୍ଚନୀଚ ଭେଦ ହେଲା ମୂଳ କଥା । ଏହି ଉଚ୍ଚନୀଚ ଭେଦର ଭାବନା ଆମ ଭିତରେ ପୁରା ମାଡ଼ିବସିଛି । ଅନ୍ୟକୁ ନିଜଠାରୁ ନୀଚ ଭାବିବାରେ ହିଁ ଆମର ବଡ଼ପଣ ରହିଛି ବୋଲି ଆମେ ବିଚାରୁ । ଯାହାକୁ ନୀଚ ମଣୁ ତାହା ସହିତ ସମାନ ଭାବରେ ବ୍ୟବହାର ଅନୁଚିତ ବୋଲି ଧରି ନେଇଥାଉ । ଏହି ଭାବନା ଯୋଗୁଁ ନୀଚ ମନେକରାଯାଉଥିବା ଗୋଷ୍ଠୀଙ୍କ ସହ ଏପରି ବ୍ୟବହାର କରା-ଯାଉଛି ଯାହା ସେମାନଙ୍କ ପାଇଁ ଅପମାନଜନକ । ଜାତି ଜାତି ମଧ୍ୟରେ ଉଚ୍ଚତା ବା ନୀଚତା ଅନୁସାରେ ଯେଉଁ ସିଢ଼ୀ ତିଆରି ହୋଇଛି, ସେଥିରେ ହରିଜନଙ୍କୁ ସମସ୍ତଙ୍କଠାରୁ ନୀଚ ଓ ବ୍ରାହ୍ମଣଙ୍କୁ ସମସ୍ତଙ୍କଠାରୁ ଉଚ୍ଚ ସ୍ଥାନ ଦିଆ ଯାଇଛି । ବାକି ସବୁ ମଝିରେ ରହିଛନ୍ତି ।

ପ୍ରାଚୀନତମ ଆଧ୍ୟାତ୍ମିକ ବିଚାରଧାରାରେ ସବୁ ମଣିଷଙ୍କୁ ସମାନ ବୋଲି ଧରି ନିଆଯାଇଥିଲା । ଆଧୁନିକ ଯୁଗରେ ଲୋକତନ୍ତ୍ର, ସମାଜବାଦ, ସାମ୍ୟବାଦ ଆଦିର ଚିନ୍ତା ଧାରା ମାଧ୍ୟମରେ ସବୁ ମଣିଷଙ୍କର ସମାନତାରେ ବିଶ୍ୱାସ ପ୍ରତିଷ୍ଠିତ ହୋଇଛି ଆଉ ସମସ୍ତଙ୍କଠାରେ ଆତ୍ମସମ୍ମାନର ତଥା ସମାନ ଅଧିକାରର ଭାବନା ବ୍ୟାପକ ଓ ସର୍ବମାନ୍ୟ ହୋଇଛି । ଏବେ ନୀଚ ବା ପଛୁଆ ବୋଲି ମନେକରା-ଯାଉଥିବା ଜାତିମାନଙ୍କ ମଧ୍ୟରେ ଜାଗୃତି ଆସିବା ଯୋଗୁଁ ସେମାନେ ନିଜର ଅଧିକାର ତଥା ମାନବୀୟ ସମ୍ମାନ ହାସଲ କରିବାକୁ ବ୍ୟଗ୍ର ହୋଇ ପଡ଼ିଛନ୍ତି । ଏହି କାରଣରୁ ବିରୋଧ, ସଂଘର୍ଷ ଓ କେବେ କେବେ ହିଂସାର ମଧ୍ୟ ଉଦ୍ରେକ ହେଉଛି । ନିଜକୁ ଉଚ୍ଚ ବୋଲି ଭାବୁଥିବା ଜାତିମାନେ ନିଜର ପ୍ରାଧାନ୍ୟ ବଜାୟ ରଖିବାକୁ ଚାହୁଁଛନ୍ତି । ଅନ୍ୟକୁ ଜୋର ଜବରଦସ୍ତି ଦବେଇ ଦେବାକୁ ଚାହୁଁଛନ୍ତି । ଏହା ମଧ୍ୟ ଦେଖିବାକୁ ମିଳୁଛି ଯେ ଉଚ୍ଚନୀଚର ସିଢ଼ିରେ ଗୋଟିଏ ଜାତି ଅନ୍ୟ ଗୋଟିକର ପାଖାପାଖି ଥିଲେ କେଉଁ ଜାତି ଶ୍ରେଷ୍ଠ ସେଥିପାଇଁ ବଳ କଷାକଷି ଚାଲିଛି ।

ଏହା ସ୍ପଷ୍ଟ ଯେ, ଏହି ପ୍ରକାରର ବ୍ୟାପାରରେ ଲୋକଙ୍କ ମଧ୍ୟରେ ଜାତିଭେଦ ଓ ଉଚ୍ଚନୀଚ ଭାବନାକୁ ଲୋପ କରିବା ଦ୍ୱାରାହିଁ ଏପରି ସଂଘର୍ଷକୁ ଏଡ଼ାଇ ଦିଆଯାଇପାରେ, କିନ୍ତୁ ରାଜନୀତିର ମାରପେଞ୍ଚ ଯୋଗୁଁ ଏହା ଅଧିକ ଜଟିଳ ହୋଇପଡ଼ୁଛି । ଜାତି ଜାତି ମଧ୍ୟରେ ବୈଷମ୍ୟକୁ ଲୋପ କରି ଦେବାର

ବିଚାରରୁ ହରିଜନମାନଙ୍କ ପାଇଁ ଚାକିରି ଆଦିରେ ସଂରକ୍ଷଣ ବ୍ୟବସ୍ଥା ହୋଇଥିଲା । କିନ୍ତୁ ୪୭ ବର୍ଷହେଲା ସ୍ୱାଧୀନତା ଆସିଲେ ମଧ୍ୟ ଚାକିରିରେ ସେମାନଙ୍କୁ ସେମାନଙ୍କ ସଂଖ୍ୟାନୁରୂପ ସମୁଚିତ ସ୍ଥାନ ମିଳିଲା ନାହିଁ । ଏମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ପାଇଁ କୌଣସି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ହେଲା ନାହିଁ କି ଏମାନଙ୍କ ଆର୍ଥିକ ସ୍ଥିତି ସୁଧାରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ଚେଷ୍ଟା କରାଯାଇନାହିଁ ଯାହାଦ୍ୱାରା କି ଚାକିରି ପାଇଁ ଆବଶ୍ୟକ ଉଚ୍ଚ ଶିକ୍ଷା ପାଇବାର କ୍ଷମତା ଏମାନଙ୍କ ମଧ୍ୟରେ ବଢ଼ି ପାରିବ ତଥା ଯେଉଁ ଶତକଡ଼ା ଅନେଶ୍ୱତ ଲୋକଙ୍କ ପାଇଁ ଚାକିରି ନାହିଁ ସେମାନଙ୍କୁ ଅନ୍ୟ ଜୀବିକା ତଥା ସଚ୍ଛଳତା ମିଳିପାରିବ । ଏହି ପରିସ୍ଥିତିରେ ସଂରକ୍ଷଣ ଖାଲି ଭୋଟ ବ୍ୟାଙ୍କକୁ ଦୃଢ଼ କରିବା ପାଇଁ ଏକ କୌଶଳ ହୋଇ ରହିଛି ଏବଂ ହରିଜନ ତଥା ଆଦିବାସୀମାନଙ୍କ ପ୍ରତି ରାଜନୀତିକ ନେତାମାନେ ଯେଉଁ ମୌଖିକ ସହାନୁଭୂତିର ସ୍ୱର ଉତ୍ତୋଳନ କରୁଛନ୍ତି, ତାହା ସବର୍ଣ୍ଣ ଓ ହରିଜନଙ୍କ ମଧ୍ୟରେ ପରସ୍ପର ଅବିଶ୍ୱାସ ଓ ଭେଦଭାବ ବଢ଼ାଇବାରେ ହିଁ କେବଳ ସାହାଯ୍ୟ କରୁଛି । ଜାତିଭେଦ ମନୋବୃତ୍ତି କମିବା ବଦଳରେ ଅଧିକ ଦୃଢ଼ହୋଇ ଚାଲିଛି । ଏବେ ମଣ୍ଡଳ ଆୟୋଗର ସୁପାରିଶକୁ ନେଇ ଅନ୍ୟ ପଛୁଆ ଜାତିମାନଙ୍କ ମଧ୍ୟରେ ଖେଳ ଖେଳାଯାଉଛି । ଏମାନଙ୍କ ମଧ୍ୟରୁ ଶତକଡ଼ା ଜଣେରୁ କମ୍ ଲୋକଙ୍କୁ ଚାକିରି ମିଳିବାର ସମ୍ଭାବନା ଅଛି । ବାକି ଅନେଶ୍ୱତ ଜଣଙ୍କର କାଲି କେମିତି ଚୁଲି ଜଳିବ ତା'ର ଠିକଣା ନାହିଁ । ବୁଣାକାର, କେଉଟ, ବାଉଁଶ ବୁଣାଳୀ ଇତ୍ୟାଦି କାମ କରୁଥିବା ଲୋକେ ଯନ୍ତ୍ର ଶିଳ୍ପର ଆକ୍ରମଣ ଯୋଗୁଁ ଖୁବ୍ ଶୀଘ୍ର ଲୋପ ପାଇଯିବାକୁ ବସିଲେଣି । ଉପର ଜାତିର ଲୋକେ ମଧ୍ୟ ଅନେକ ବେକାର ହେଲେଣି । ଅଥାପି ମଧ୍ୟ ଏହି ଶତକଡ଼ା ଜଣକ ପାଇଁ ଫୋପଡ଼ା ଯାଉଥିବା ଝଣ୍ଡିଏ ଚାକିରିକୁ ନେଇ ଝଗଡ଼ା ଓ ଅଶାନ୍ତିର ଅନ୍ତ ନାହିଁ ।

ଜାତିଭେଦ ଆଉ ଛୁଆଁ ଅଛୁଆଁ ଯେପରି ସମାଜ ରଚନାର ମୂଳଦୁଆରେ ଥିବା ହିଂସା ସ୍ତ୍ରୀମାନଙ୍କର ଗୋଲାମୀ ମଧ୍ୟ ସେହିପରି ହିଂସା । ଭାରତର ପୁରାତନ ଆଧ୍ୟାତ୍ମିକ ବିଚାର ଧାରାରେ ମହିଳାମାନଙ୍କୁ ବହୁତ ଉଚ୍ଚ ସ୍ଥାନ ଦିଆଯାଇଛି । କିନ୍ତୁ ଆଜିର ସମାଜରେ ସେମାନେ ପୁରୁଷଠାରୁ ନ୍ୟୂନ ବୋଲି ଧରି ନିଆଯାଇଛି । ହିନ୍ଦୁ ସ୍ତ୍ରୀମାନଙ୍କର ଆଇନ ଅନୁସାରେ ସମ୍ପତ୍ତିରେ ସମାନ ଅଧିକାର ଥିଲେ ମଧ୍ୟ ବାସ୍ତବରେ ଏହି ଅଧିକାରକୁ କେହି ମାନୁ ନାହାନ୍ତି । ଗାନ୍ଧୀଜୀଙ୍କ ପ୍ରୟାସ ଯୋଗୁ ମହିଳାମାନେ ସାଧାରଣ ଜୀବନରେ ସବୁ କ୍ଷେତ୍ରରେ ଭାଗ ନେବାକୁ ଆଗେଇ ଆସିଲେଣି । ତଥାପି ମଧ୍ୟ ଏହି ଭାଗିଦାରୀ ବହୁତ କମ୍ । ଯୌତୁକ ଓ ସତୀ ପ୍ରଥା ଏହି ବିଷମତା ଓ ଅସହାୟତାର ବିଭତ୍ସ ଅଭିବ୍ୟକ୍ତି, ମୁସଲମାନ ସ୍ତ୍ରୀଲୋକଙ୍କ ଦଶା ତ ଆହୁରି ଅଧିକ ଦୟନୀୟ ।

# ସାଂପ୍ରଦାୟିକ ହିଂସା

ଆଜି ଭାରତବର୍ଷରେ ଏକ ଶକ୍ତିଶାଳୀ ଆନ୍ଦୋଳନ ମୁଣ୍ଡ ଟେକିଛି ଯାହାକି ଭାରତବର୍ଷ ଏକ ହିନ୍ଦୁଙ୍କର ଦେଶ ବୋଲି କହୁଛି । ସେଥିରେ ଅଣହିନ୍ଦୁମାନଙ୍କର ସ୍ଥାନ ନାହିଁ । ଏହି ପ୍ରକାର ତତ୍ତ୍ୱକୁ ମାନୁଥିବା ଲୋକେ ମୁସଲମାନ ଓ ଖ୍ରୀଷ୍ଟିୟାନମାନଙ୍କ ବିରୁଦ୍ଧରେ ବିଦ୍ୱେଷର ପ୍ରଚାର ବ୍ୟବସ୍ଥିତ ଭାବରେ କରୁଛନ୍ତି । ଦଙ୍ଗାହେଙ୍ଗାମା ମଧ୍ୟ ଉସ୍କାଉଛନ୍ତି । ପରିଣାମ ସ୍ୱରୂପ ଦେଶରେ କେତେକାଗାରେ ଭୟଙ୍କର ଦଙ୍ଗା ହୋଇଯାଇଛି ଓ ହେଉଛି । ହଜାର ହଜାର ନିରପରାଧ ବ୍ୟକ୍ତିଙ୍କ ଜୀବନ ଯାଇଛି ଓ ଯାଉଛି । ଏହା ମଧ୍ୟ ଏକ ଭ୍ରମଧାରଣାର ପରିଣାମ ।

ପ୍ରତ୍ୟେକ ଧର୍ମର ଅନୁଗାମୀଙ୍କ ଭିତରେ ଆପଣା ଆପଣା ଧର୍ମକୁ ସର୍ବଶ୍ରେଷ୍ଠ ମଣିବାର ମନୋବୃତ୍ତି ଦେଖିବାକୁ ମିଳେ । ଆପଣା ଧର୍ମର ନୀତି ଅନୁସାରେ ସମସ୍ତେ ଯଦି ଚାଲନ୍ତେ, ତେବେ ସମାଜ କେଡ଼େ ବ୍ୟବସ୍ଥିତ ଆଉ ଶାନ୍ତିମୟ ହୁଅନ୍ତା ଆଉ କେତେ ଉପରକୁ ଉଠି ପାରନ୍ତା । ଏହି ସୁନ୍ଦର କଳ୍ପନାର ସ୍ୱପ୍ନରେ ମଜ୍ଜିଯାଇ କେତେକ ଲୋକେ ଆପଣା ଧର୍ମକୁ ଅନ୍ୟମାନଙ୍କ ଉପରେ ଲଦି ଦେବାକୁ ଚେଷ୍ଟା କରୁଛନ୍ତି । ନିଜ ଧର୍ମଠାରୁ ଅନ୍ୟ ଧର୍ମକୁ ଖରାପ ଭାବୁଥିବା ଲୋକେ ସେହି ଧର୍ମକୁ ଲୋପ କରି ଦେବାକୁ ଚାହୁଁଛନ୍ତି । ଏଥିଯୋଗୁଁ ପରସ୍ପର ବିରୋଧ, ସଂଘର୍ଷ ଆଉ ଭୟଙ୍କର ହିଂସା ଜନ୍ମ ନେଉଛି । ଗୋଟିଏ ଯୁଗରେ ଭାରତରେ ଶୈବ, ବୈଷ୍ଣବ, ଶାକ୍ତ, ଆଦି ସମ୍ପ୍ରଦାୟ ଗୁଡ଼ିକ ମଧ୍ୟରେ ପରସ୍ପର ଏହିପରି ରକ୍ତାକ୍ତ ହତ୍ୟାକାଣ୍ଡ, ଦଙ୍ଗା ଆଦି ହେଉଥିଲା, ଯେପରି ଆଜି ହିନ୍ଦୁ, ମୁସଲମାନମାନଙ୍କ ମଧ୍ୟରେ ହେଉଛି । ବୌଦ୍ଧଧର୍ମକୁ ଭାରତରୁ ଅସ୍ତ୍ରବଳ ଦ୍ୱାରା ହିଁ ନିର୍ବାସିତ କରାଗଲା । ମୁସଲମାନ ଆସିଲେ ଓ ସେମାନଙ୍କ ଦ୍ୱାରା ବି ଅତ୍ୟାଚାର ଓ ଉତ୍ପୀଡନ ହେଲା । ବ୍ରିଟିଶ୍ ଶାସନର ସାହାଯ୍ୟ ନେଇ ଖ୍ରୀଷ୍ଟିୟାନମାନେ ମଧ୍ୟ ନିଜର ଆସ୍ଥାନ ଦୃଢ଼କଲେ । ଏକଥା ସତ୍ୟ ଯେ ପ୍ରତ୍ୟେକ ଧର୍ମରେ ଗୋଟାଏ ମୁଣ୍ଡରେ ଆକାଶକୁ ଛୁଇଁଲା ପରି ଉଚ୍ଚ ବିଚାର ଓ ଆଦର୍ଶ ଥିବା ବେଳକୁ ଅନ୍ୟଦିଗରେ ପ୍ରତ୍ୟେକ ଧର୍ମର ସଙ୍ଗଠନ ଓ ଦୈନନ୍ଦିନ ଆଚରଣରେ ପାତାଳକୁ ଛୁଇଁଥିବା ଅନ୍ଧବିଶ୍ୱାସ, କୁସଂସ୍କାର ଓ ଅନ୍ୟ ଦୁର୍ଗନ୍ଧ ପଶି ଯାଇଛି । ଆଜିକାଲି ଏହି ପୃଥିବୀର ପ୍ରତ୍ୟେକ ଦେଶରେ ସବୁ ପ୍ରକାରର ଲୋକଙ୍କୁ ସାଙ୍ଗହୋଇ ରହିବାକୁ ପଡ଼ୁଛି, ସାଥୀହୋଇ ଚାଲିବାକୁ ପଡ଼ୁଛି ଓ ମରିବାକୁ ବି ପଡ଼ୁଛି । ବିଶେଷ ଭାବରେ ଭାରତରେ କେହି କାହାକୁ ତଡ଼ିଦେଇ ପାରିବେ ନାହିଁ । ଗଣତନ୍ତ୍ରର ଯୁଗ ଆସିଲାଣି, ଯେଉଁଥିରେ କି ପ୍ରତ୍ୟେକ ବ୍ୟକ୍ତି ନିଜର ସ୍ୱତନ୍ତ୍ର ମତ ପୋଷଣ କରିବାର ଅଧିକାର ସ୍ୱୀକୃତ ହୋଇଛି । ଖାଲି ଏତିକି

ନୁହେଁ, ଗାନ୍ଧୀଜୀଙ୍କର ବିଚାରର ଅନୁଯାୟୀ ପ୍ରତ୍ୟେକେ ମୁଁ କ'ଣ କରିବି ଓ କ'ଣ ନ କରିବି ଯାହା ନିଜେ ଚିନ୍ତାକରି ସ୍ଥିରକରିବା ଉଚିତ । କୌଣସି ମତକୁ ଅନ୍ଧ ଭାବରେ ଅନୁସରଣ କରିବା ଉଚିତ ନୁହେଁ । ଏଥିଲାଗି ଗାନ୍ଧୀଜୀ କହୁଥିଲେ ଯେ ସଂସାରରେ ଯେତେ ମନୁଷ୍ୟ ସେତେ ଧର୍ମ ରହିଛି ।

ତେଣୁ ସାଂପ୍ରଦାୟିକ ହିଂସାକୁ ଲୋପ କରିଦେବାକୁ ଗଲେ ସବୁଧର୍ମ ପ୍ରତି ସମାନ ଆଦର ରଖିବା ନିତାନ୍ତ ଆବଶ୍ୟକ । ବିଭିନ୍ନ ଧର୍ମର ଲୋକଙ୍କ ଭିତରେ ପରସ୍ପର ବିଷୟରେ ଯେଉଁସବୁ ଭ୍ରାନ୍ତଧାରଣା ରହିଛି ସେସବୁକୁ ଦୂର କରିବା ପାଇଁ ଚେଷ୍ଟା ଆବଶ୍ୟକ । ସମୟ ସମୟରେ ଯେଉଁ ସବୁ ଗୁଜବ ବ୍ୟାପକ ଯୋଗୁଁ ଆଶଙ୍କା ସନ୍ଦେହ ଆଉ ବିଦ୍ୱେଷ ବାହାରି ପଡ଼ୁଛି ସେସବୁର ନିରାକରଣ କରିବା ମଧ୍ୟ ଦରକାର । ବିଭିନ୍ନ ପ୍ରକାରର ସାଂସ୍କୃତିକ, ଆଧ୍ୟାତ୍ମିକ ଓ ଅନ୍ୟାନ୍ୟ ସମାବେଶରେ ବିଭିନ୍ନ ସଂପ୍ରଦାୟର ଲୋକଙ୍କୁ ଏକାଠି କରିପାରିଲେ ପରସ୍ପର ମଧ୍ୟରେ ବୁଝାମଣା ଓ ମୈତ୍ରୀ ବଢ଼ାଇବା ଦିଗରେ ତାହା ସହାୟକ ହେବ । ଯଦି ବିଭିନ୍ନ ଧର୍ମାବଲମ୍ବୀ ଲୋକଙ୍କର ମିଳିତ ବୈଠକ ହୁଏ ଓ ସେଥିରେ ପାଳିକରି ପ୍ରତ୍ୟେକ ଧର୍ମଗ୍ରନ୍ଥରୁ ଗୋଟିଏ ଗୋଟିଏ ଅଂଶ ବାଛି ପାଠ କରିବା ପାଇଁ କହି ତାହା ଉପରେ ଆଲୋଚନା କରାଯାଏ ତେବେ ତାହା ସଦ୍‌ଭାବ ସୃଷ୍ଟି ଦିଗରେ ଏକ ପ୍ରଭାବପୂର୍ଣ୍ଣ ପଦକ୍ଷେପ ହେବ । ସେବକ ନିଜର ଜୀବନ ଶୈଳୀ ତଥା ଆଚରଣ ଦ୍ୱାରା ସମସ୍ତଙ୍କର ବିଶ୍ୱାସର ପାତ୍ର ହେବା ଅତ୍ୟାବଶ୍ୟକ ।

## ଆର୍ଥିକ ହିଂସା

ଆଜି ଦୁନିଆକୁ ସନ୍ତ୍ରସ୍ତ କରୁଥିବା ହିଂସାର ଅଭିବ୍ୟକ୍ତି ଭିତରେ ଆର୍ଥିକ କ୍ଷେତ୍ରର ହିଂସା ସବୁଠାରୁ ଭୟାନକ । ଜାଣିବା ଶୁଣିବା ଲୋକେ ହିସାବ କରି ଜଣେଇ ଦେଇଛନ୍ତି ଯେ, ପ୍ରତି ମିନିଟ୍‌ରେ ସାରା ପୃଥିବୀରେ ଚବିଶ ଜଣ ଲୋକ ଭୋକ ଉପାସର ଶିକାର ହୋଇ ମରୁଛନ୍ତି । ଏମାନଙ୍କ ମଧ୍ୟରୁ ମିନିଟ୍‌ରେ ଭାରତରୁ ମରୁଛନ୍ତି ଆଠ ଜଣ । ମୋଟରେ ଏହି ମୃତ୍ୟୁହାର ମିନିଟରେ ଆଠ, ଘଣ୍ଟାରେ ୪୮୦, ଦିନକରେ ୧୧୫୨୦ । ତେବେ ବର୍ଷକୁ ଏହାର ସଂଖ୍ୟା ଯାହା ହେବ, ପାଠକ ତାହା ନିଜେ ହିସାବ କରି ନେବେ । ଏହି ଭୟାନକ ମୃତ୍ୟୁହାର ଖାଦ୍ୟାଭାବ କି ଦୁର୍ଭିକ୍ଷ ଯୋଗୁ ନୁହେଁ । ଏହା ସଦାସର୍ବଦା ଘଟୁଥିବା, ପର୍ଯ୍ୟାପ୍ତ ପରିମାଣରେ ଖାଦ୍ୟ ମହଜୁଦ୍ ଥିବା ସମୟରେ ମଧ୍ୟ, ଯଥେଷ୍ଟ ଖାଦ୍ୟ ଖାଇବାକୁ ପାଉ ନ ଥିବା ଯୋଗୁ ଘଟୁଥିବା ମୃତ୍ୟୁର ହିସାବ ।

ଶୋଷଣ ମାନବ ସମାଜର ଗୋଟିଏ ସବୁଠାରୁ ପୁରୁଣା ବେମାରି । ପ୍ରାଚୀନ କାଳରେ ଜମିର ମାଲିକାନା ଶୋଷଣର ସର୍ବୋତ୍କୃଷ୍ଟ ପନ୍ଥା ଥିଲା । ରାଜା

ବା ଜମିଦାର ହଜାର ହଜାର ଏକର ଜମିର ପୁରୁଷାନୁକ୍ରମିକ ମାଲିକ ଭାବେ ରହି ଆସୁଥିଲେ । ସେହି ଜମି ଚାଷ କରୁଥିବା ଚାଷୀକୁ ନିଜର ଉତ୍ପାଦିତ ଶସ୍ୟ କେଉଁଠି ତଉଠେ, କେଉଁଠି ଅଧେ ଓ କେଉଁଠି ଅଧାରୁ ବି ଅଧିକା ଭାଗ ଜମି ମାଲିକଙ୍କୁ ଦେବାକୁ ହେଉଥିଲା । ମାଲିକ ନିଜେ କୌଣସି ପରିଶ୍ରମ ନ କରି ଭାଗୁଆଳିର ଭାଗ ଆଦାୟ କରି ଧନୀ ହେଉଥିଲେ । କିନ୍ତୁ ସେମାନେ ନିଜେ ଯଦି ଚାଷ କରୁଥାଆନ୍ତେ ତେବେ ଜଣେ ଲୋକ କେବଳ ପାଞ୍ଚ ଦଶ ଏକର ହାତରେ ଚାଷ କରିବା ସମ୍ଭବ ହୁଅନ୍ତା । ବାକି ଭାଗୁଆଳୀ ବା ମୂଲିଆଙ୍କ ଦ୍ୱାରା କରାଇବା ଛଡ଼ା ଗତି ନ ଥିଲା । ମାତ୍ର ସେଥିପାଇଁ ବେକାରୀ ବଢ଼ୁ ନ ଥିଲା । ଗାଁରେ ହେଉ ବା ସହରରେ, ପଚିଶ ବା ତିରିଶ ପରିବାର ପାଇଁ ଜଣେ ଜଣେ ବୁଣାକାର, ବଢ଼େଇ, କମାର, କୁମ୍ଭାର, ଧୋବା, ତେଲିଆଦି ପରିବାର ରହୁଥିଲେ । ସମସ୍ତଙ୍କୁ ଯଥେଷ୍ଟ ପରିମାଣରେ କାମ ମିଳୁଥିଲା । ଲୋକ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ କାରିଗରଙ୍କ ସଂଖ୍ୟା ବି ବଢ଼ୁଥିଲା । ତେଣୁ ବେକାରୀର ପ୍ରଶ୍ନ ନ ଥିଲା ।

ତଥାକଥିତ ଶିଳ୍ପବିପ୍ଳବ ଆସିବା ଫଳରେ ପୁଞ୍ଜିପତି ମାନେ ବଡ଼ବଡ଼ କାରଖାନା ବସାଇବାକୁ ଲାଗିଲେ । ଗ୍ରାମ୍ୟଶିଳ୍ପ, କାମଧନ୍ଦା ଲୋପ ପାଇବାକୁ ବସିଲା । ଭାରତବର୍ଷରେ କେତେକ ଧନ୍ଦା ଜବରଦସ୍ତି ବନ୍ଦ କରାଇ ଦିଆଗଲା । ଏବେ ବି ଉତ୍ତର ପ୍ରଦେଶ ପ୍ରଭୃତି କେତେକ ରାଜ୍ୟରେ ଚିନି କାରଖାନାମାନଙ୍କର ଲାଭ ପାଇଁ ଗୁଡ଼ ତିଆରି ଧନ୍ଦା ଉପରେ ନାନା କଟକଣା ରହିଛି । ଓଡ଼ିଶା ପରି କେତେକ ରାଜ୍ୟରେ ଚିନିକାରଖାନାର ପାଖାପାଖି ସ୍ଥାନରେ ଗୁଡ଼ ତିଆରି ନିଷିଦ୍ଧ କରିଦିଆ ଯାଇଛି । ଏହିପରି ସମସ୍ତ କାହାଣୀକୁ କହି ବସିଲେ ତ ଲମ୍ବା ଓ ଲୋମହର୍ଷଣକାରୀ ହେବ ।

କାରଖାନା ମାଲିକମାନେ ମଜୁରିଆମାନଙ୍କୁ ନ୍ୟାଯ୍ୟ ମଜୁରି ନ ଦେଇ ଲୁଣ୍ଠନ କରୁଛନ୍ତି । ବଜାରରେ ନିଜର ମାଲ ବିକ୍ରିକରି ମୋଟା ଲାଭ ମଧ୍ୟ ଉଠାଇ ପାରୁଛନ୍ତି । ଆଜିକାଲି ଏହି ଲାଭର ପରିମାଣର ସ୍ତର କେତେ ଉଚ୍ଚ ତାହା ବ୍ୟାଙ୍କର କରଜ ଓ ସୁଧର ହାରରୁ ଜଣାପଡ଼ିବ । ଚାଳିଶ ବର୍ଷ ତଳେ ଶତକଡ଼ା ତିନି ସୁଧର ହାର ବହୁତ ବୋଲି ମନେ ହେଉଥିଲା । ଏବେ ଶତକଡ଼ା ଅଠରରୁ କୋଡ଼ିଏ ସୁଧ ନିଆଯାଉଛି । ଏହାର ଅର୍ଥ ହେଲା କୌଣସି କମ୍ପାନୀ ଆପଣା କାରବାର ପାଇଁ ବ୍ୟାଙ୍କରୁ କରଜ ନେବ ତ ଶତକଡ଼ା କୋଡ଼ିଏ ଠାରୁ ଅଧିକ ଲାଭ ମିଳିଲେ ଯାଇ ତାଙ୍କୁ ପୋଷେଇବ । ଆଜିକାଲି ଗୋଟିଏ ଗୋଟିଏ କମ୍ପାନୀ ଅଂଶୀଦାର ବା ସେଆରହୋଲଡ଼ର୍ ଶତକଡ଼ା ୩୦ ବା ୪୦ ଡ଼ିଭିଡେ଼ଣ୍ଡ ବା ଲାଭାଂଶ ଦେଉଛନ୍ତି ।

କିନ୍ତୁ ଆଧୁନିକ ଶିଳ୍ପ ବିକାଶ ଯୋଗୁଁ ସବୁଠାରୁ ଭୟଙ୍କର ପରିଣାମ ହେଉଛି, କୋଟି କୋଟି ଲୋକଙ୍କର ଧନ୍ଦା ବୁଡ଼ାଇ ଦେବା । ଇଂରେଜମାନେ ଭାରତ ଓ ଆଫ୍ରିକାର କେତୋଟି ଦେଶ ତଥା ଧନ୍ଦାକୁ ଦଖଲ କରି ନେଇ ସେହି ଦେଶ ସବୁକୁ ଆପଣା କାରଖାନା ତିଆରି ମାଲର ବଜାର କଲେ । ନିଜ ଦେଶର ସମୃଦ୍ଧିକୁ ସେମାନେ ଭାରତ ସମେତ ଅନ୍ୟାନ୍ୟ ଦେଶର ଭୟାନକ ବେକାରି, ଦାରିଦ୍ର୍ୟ ଓ ଭୋକଉପାସ ଉପରେ ଗଢ଼ିଲେ । ଏବେ ସ୍ୱାଧୀନତା ପରେ ଭାରତର ବିଭିନ୍ନ ସହର ମଧ୍ୟରେ ବଡ଼ ବଡ଼ କାରଖାନାସବୁ ଗଢ଼ି ଉଠିବା ଫଳରେ ଭାରତର ଗ୍ରାମଗୁଡ଼ିକୁ ଲୁଟ କରିବା ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇଗଲା । ପ୍ରଥମେ ଇଂରେଜ ଭାରତୀୟ ଗ୍ରାମଗୁଡ଼ିକୁ ଲୁଟ କରି ଧନୀ ହେବାକୁ ଲାଗିଥିଲେ, ଏବେ ବମ୍ବେଇ, ଦିଲ୍ଲୀ, ମାନ୍ଦ୍ରାଜ, କଲିକତା, ନାଗପୁର, କାନପୁର, ଅହମଦାବାଦ, ବାଙ୍ଗାଲୋର, କୋୟେମ୍ବାଟୁର ଆଦିର ଧନୀ ଲୋକେ ଗାଁମାନଙ୍କୁ ଶୋଷଣ କରି ସମୃଦ୍ଧ ହେବାରେ ଲାଗିଛନ୍ତି । ଏହି ସବୁ ସହରର ଗରିବ ଲୋକେ ଗାଁରୁ ହିଁ ଉଜୁଡ଼ିଯାଇ ସେଇ ସହରମାନଙ୍କରେ ପହଞ୍ଚିଛନ୍ତି ।

ଭାରତରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥିବା ବେଳେ ଧନୀ ଦରିଦ୍ର ଭେଦ ଭାବକୁ ଲୋପ କରି ଆର୍ଥିକ ସମାନତା ସ୍ଥାପନ କରିବାର ଦାବୀ ଓ ଆଦର୍ଶ ପ୍ରାୟ ସର୍ବସମ୍ମତ ହୋଇଯାଇଥିଲା । ଗାନ୍ଧୀଜୀ ଆର୍ଥିକ ସମାନତାକୁ ଅହିଂସ ସ୍ୱରାଜ୍ୟର ଚାବି ବୋଲି କହିଥିଲେ । ଶାସକ ଦଳ ଗାନ୍ଧୀଜୀଙ୍କର ଆଦର୍ଶକୁ ପ୍ରତ୍ୟାଖ୍ୟାନ କଲେ, କିନ୍ତୁ ସମାଜବାଦ ସ୍ଥାପନ ନିଜର ଆଦର୍ଶ ବୋଲି କହି ଚାଲିଥିଲେ । ଯଦିଓ ତାହା ଦ୍ୱାରା ଅନୁସୃତ ଆର୍ଥିକ ନୀତି ଯୋଗୁଁ ଦେଶରେ ଧନୀ ଦରିଦ୍ର ଭେଦ ଓ ତାହା ସାଙ୍ଗେ ସାଙ୍ଗେ ବେକାରି, ଅଶିକ୍ଷା, ସ୍ୱାସ୍ଥ୍ୟହାନି ଆଦି ସମସ୍ୟା ମଧ୍ୟ ବଢ଼ି ଚାଲିଥିଲା ।

ଏବେ ପାଞ୍ଚବର୍ଷ ହେଲା ଅର୍ଥନୀତିର ଉଦାରିକରଣ ଓ ଜାଗତିକରଣ ନାଁରେ ଯେଉଁ ନୂଆ ନୀତି ଭାରତ ସରକାର ଚଳାଇଛନ୍ତି ସେଥିରେ ବିଦେଶୀ କମ୍ପାନୀମାନେ ଏ ଦେଶରେ ପଶିବାପାଇଁ ବାଟ ଖୋଲି ଦିଆଯାଇଛି ଓ ଉତ୍ସାହିତ କରାଯାଉଛି । ସ୍ୱଦେଶୀ ଓ ବିଦେଶୀ ପୁଞ୍ଜିପତିଙ୍କ ସ୍ୱାର୍ଥସାଧନ ପାଇଁ ବିବିଧ ଶ୍ରେଣୀର ଖଟିଖିଆ ଲୋକଙ୍କର ଧନ୍ଦାସବୁକୁ ମାରିଦିଆ ଯାଉଛି । ଏହିପରି ଭାବରେ ତନ୍ତୀ, ମତ୍ସ୍ୟଜୀବୀ, ଲୁଣମରୁଲୀ, ମୋଚି, ଦରଜୀ ଆଦିଙ୍କ ଧନ୍ଦା ବୁଡ଼ିବାକୁ ଲାଗିଲାଣି । ଜମିର ଜୋତ ଉପରେ ଥିବା ସର୍ବୋଚ୍ଚ ସୀମା ବା ସୀଲିଂଗକୁ ଉଠାଇ ଦିଆ ଯାଇଛି ଯାହା ଦ୍ୱାରା କି ବୃହତ କମ୍ପାନୀମାନେ ହଜାର ହଜାର ବା ଲକ୍ଷ ଲକ୍ଷ ଏକରର ମାଲିକ ହୋଇପାରିବେ ଓ ହେଉଛନ୍ତି । ଏହା ଦ୍ୱାରା ଗ୍ରେଟ ଓ ମଧ୍ୟବିତ୍ତ

ଗୃହୀମାନେ ସର୍ବହରା ହେବାରେ ଲାଗିଲେଣି । ଏହିପରି ଭାବରେ ଏ ଦେଶରେ ଆର୍ଥିକ ହିଂସା ଜାଣି ଶେଷ ସୀମାରେ ପହଞ୍ଚିଲାଣି ।

## ଶାସନର ହିଂସା

ଏ ଯେଉଁ ଶୋଷଣମୂଳକ ଅର୍ଥବ୍ୟବସ୍ଥା ଆଜ ଦୁନିଆସାରା ବ୍ୟାପିଛି ଏହାର ପ୍ରଧାନ ଲକ୍ଷଣ ଆର୍ଥିକ କ୍ଷମତାର କେନ୍ଦ୍ରୀକରଣ । ଉତ୍ପାଦନ ଯେ କେବଳ ବଡ଼ ବଡ଼ କାରଖାନାମାନଙ୍କରେ ହେଉଛି ଏତିକ ନୁହେଁ, ଉତ୍ପନ୍ନ ଦ୍ରବ୍ୟର ବନ୍ଦୋବସ୍ତ ଓ ବିତରଣ ବ୍ୟବସ୍ଥା ମଧ୍ୟ ବଡ଼ ବଡ଼ ବେପାରୀମାନଙ୍କ ହାତରେ ରହୁଛି । କଞ୍ଚାମାଲ ଦୂରଦୂରାନ୍ତରୁ ଏକାଠି କରିବାକୁ ପଡ଼ୁଛି । ତା' ଉପରେ ନିୟନ୍ତ୍ରଣ ମଧ୍ୟ ଅଳ୍ପ କିଛି ଲୋକଙ୍କ ହାତରେ ରହୁଛି । ଏତିକ ନୁହେଁ, ଶାସନକୁ ମଧ୍ୟ ଗୋଟିଏ ସ୍ଥାନରେ କେନ୍ଦ୍ରୀଭୂତ କରିବା ଆବଶ୍ୟକ ପଡ଼ୁଛି । ଧରିନିଆଯାଉ ଯଦି ଉତ୍ତର-ପ୍ରଦେଶରେ ଗାଁମାନଙ୍କରେ ଗ୍ରାମସଭା ହାତରେ ଅଧିକରୁ ଅଧିକ କ୍ଷମତା ଆସେ । ଗାଁରେ କେଉଁ କେଉଁ ଧନ୍ଦା ଚାଲିପାରିବ, କପରି ଚାଲିବ, ଏହା ସ୍ଥିର କରିବା ଗ୍ରାମସଭାର କର୍ତ୍ତବ୍ୟ ହେଇଥାଏ । ଏପରି ଅବସ୍ଥାରେ ଚିନି କାରଖାନାମାନଙ୍କର ସୁବିଧା ଦୃଷ୍ଟିରୁ ଗୁଡ଼ ଉତ୍ପାଦନ ଶିଳ୍ପକୁ ନଷ୍ଟ କରିବା କ'ଣ ସମ୍ଭବ ହୋଇ ପାରନ୍ତା ? ଲକ୍ଷ୍ନୌରେ କ୍ଷମତା କେନ୍ଦ୍ରୀଭୂତ ହୋଇ ରହିଛି । ଏଥିପାଇଁ ଉତ୍ତର ପ୍ରଦେଶ ସରକାର କଲମର ଗୋଟାଏ ଗାରରେ ଏହା କରିଦେଇ ପାରିଲେ ।

ଶାସନ କେନ୍ଦ୍ରୀଭୂତ ହେବାରୁ ଏହାକୁ ଚଳାଇଲାବାଲା, ଅର୍ଥାତ୍ କର୍ମଚାରୀଗୋଷ୍ଠୀ ତଥା ରାଜନୀତି କଲାବାଲା, ଗୋଟିଏ ଗୋଟିଏ ନ୍ୟସ୍ତ ସ୍ୱାର୍ଥରେ ପରିଣତ ହେଲେଣି । ଭାରତବର୍ଷ ସ୍ୱାଧୀନ ହେଲା । ମହାତ୍ମା ଗାନ୍ଧୀଙ୍କ ଯୋଗୁଁ ଦେଶବାସୀଙ୍କ ମନରେ ଯେଉଁ ଜାଗରଣ ଆସିଥିଲା, ସେଥିଯୋଗୁଁ ଏଠାରେ ଗଣତନ୍ତ୍ର ପ୍ରଣାଳୀକୁ ଗ୍ରହଣ କରିବା ଛଡ଼ା ଆଉ ଚାରା ନଥିଲା, ଯଦ୍ୟପି କିଛି ନେତା ସାବାଳକ ଭୋଟ ଅଧିକାର ସପକ୍ଷରେ ନ ଥିଲେ । କିନ୍ତୁ ଗଣତନ୍ତ୍ରକୁ ଯଥାଶକ୍ତି ସୀମିତ କରି ରଖିବାର ଚେଷ୍ଟା ଶାସକମାନଙ୍କ ଦ୍ୱାରା କରାଗଲା । ଆଜ ମଧ୍ୟ ଏହି ଚେଷ୍ଟା ଚାଲୁରହିଛି । କ୍ଷମତାକୁ ହସ୍ତଗତ କରିବାକୁ କେତେପ୍ରକାର ମାରପେଞ୍ଚ ଖେଳ ଖେଳା ଚାଲିଲା, ଯାହାର ପରିଣାମରେ ଭାରତରେ ଜନସାଧାରଣଙ୍କର ସାର୍ବଭୌମତ୍ୱ ସୀମିତ ହୋଇଗଲା ।

ଶାସନ ଯେତେ ଅଧିକ କେନ୍ଦ୍ରୀଭୂତ ହେବ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଗୁଡ଼ିକ ସେତିକ ସହଜରେ ଏହା ଉପରେ ପ୍ରଭାବ ପକାଇପାରିବେ । ଶାସନର ନିଷ୍ପତ୍ତିସବୁକୁ ସେତିକ ଅଧିକ ପ୍ରଭାବିତ କରି ପାରିବେ । ଭାରତରେ ଏହାହିଁ ହେଉଛି । ଭାରତର ପ୍ରତ୍ୟେକ ରାଜ୍ୟରେ ଆଜଠାରୁ ପଚିଶ ବା ତିରିଶ ବର୍ଷ ତଳେ

ଭୂସଂସ୍କାର ଆଇନ ଗୃହୀତ ହୋଇଥିଲା । ଏହିସବୁ ଆଇନର ଉଦ୍ଦେଶ୍ୟ ଥିଲା, ଜମିର ମାଲିକାନାର ପରିମାଣକୁ ସିଲିଙ୍ଗ ଦ୍ୱାରା ସୀମାବଦ୍ଧ କରିବା ତଥା ପ୍ରକୃତରେ ଚାଷ କରୁଥିବା କୃଷକମାନଙ୍କୁ ଜମିର ମାଲିକ ବୋଲି ମାନିବା । କିନ୍ତୁ ବଡ଼ ବଡ଼ ଜମି ମାଲିକମାନଙ୍କର ପ୍ରଭାବ ଯୋଗୁଁ ପ୍ରାୟ ପ୍ରତ୍ୟେକ ରାଜ୍ୟରେ ଭୂସଂସ୍କାର ଆଇନରେ ଏପରି ଫାଙ୍କବାଟ ରଖାଗଲା, ଯାହାର ସୁଯୋଗ ନେଇ ଅନେକ ରାଜ୍ୟରେ ଲକ୍ଷ ଲକ୍ଷ ବଡ଼ ବଡ଼ ଜମିମାଲିକମାନେ ନିଜ ଦଖଲରେ ଶହ ଶହ ଏକର ଜମି ରଖିପାରିଲେ । ଏଥିସହ ପଛୁଆ ଅଞ୍ଚଳମାନଙ୍କରେ ସାହୁକାରମାନଙ୍କର ପ୍ରାଦୁର୍ଭାବ ଊଣା ହେଲା ନାହିଁ । ସରକାରୀ ବ୍ୟାଙ୍କଗୁଡ଼ିକ ମଧ୍ୟ ସାହୁକାରମାନଙ୍କ ଠାରୁ ଅଧିକ ଭୟାନକ ଶୋଷଣ କରିବାକୁ ଲାଗିଲେ । ଗାଁରେ ବିକାଶ କାର୍ଯ୍ୟକ୍ରମ ମାଧ୍ୟମରେ ପୋଷା ହୋଇଥିବା ସରକାରୀ କର୍ମଚାରୀମାନେ ବିକାଶ ନାଁରେ ସରକାରୀ ଅର୍ଥକୁ ମନଇଚ୍ଛା ଲୁଟି କରିବାକୁ ଲାଗିଲେ । ଅନେକ ଜାଗାରେ ଏମାନଙ୍କ ସାଙ୍ଗରେ ଠିକାଦାର ଓ ରାଜନୈତିକ ଦଳଗୁଡ଼ିକର ସଲାସୂତ୍ର ଥାଏ । ଜଣେ ଜଣାଶୁଣା ଅର୍ଥନୀତିଜ୍ଞବିତ୍ ଅଟକଳ କରିଥିଲେ ଯେ ଭାରତର ପୂର୍ବାଞ୍ଚଳରେ ସରକାରୀ ଯୋଜନାଗୁଡ଼ିକ ଲାଗି ଦିଆଯାଉଥିବା ଅର୍ଥର ଶତକଡ଼ା ସତୁରି ଭାଗ ଚୋରି ହୁଏ, ତ ପଶ୍ଚିମାଞ୍ଚଳରେ ହୁଏ ଶତକଡ଼ା ଚାଳିଶରୁ ପଚାଶ ଭାଗ । ଏହି କାରଣରୁ ତଥା ଯୋଜନାଗୁଡ଼ିକ ଆମୂଳଚୂଳ ଦୋଷଯୁକ୍ତ ହୋଇଥିବା ଯୋଗୁ ଦାରିଦ୍ର୍ୟ, ବେକାରୀ ତଥା ଲୋକଙ୍କ ଉପରେ ଏହାର ପ୍ରଭାବ କିଛି ପଡ଼ୁନାହିଁ ।

କୌଣସି କୌଣସି ସ୍ଥାନରେ ପଛୁଆ ଅଞ୍ଚଳମାନଙ୍କରେ ନକ୍ସଲବାଦୀଙ୍କ ପ୍ରତିପତ୍ତି ବଢ଼ିବାର ଏହା ଏକ କାରଣ । ଦୁଇ ମୁଖ୍ୟ କମ୍ୟୁନିଷ୍ଟ ପାର୍ଟି ସଂସଦୀୟ ରାଜନୀତିରେ ଅଂଶ ଗ୍ରହଣ କରିବା ପରେ ମଧ୍ୟ ନକ୍ସଲବାଦୀ ଏବେ ବି ହିଂସାତ୍ମକ କ୍ରାନ୍ତିରେ ବିଶ୍ୱାସ କରନ୍ତି । କେତେକ ପଛୁଆ ଅଞ୍ଚଳମାନଙ୍କରେ ଏମାନେ ଏପରି ପ୍ରଭାବ ଜମେଇଛନ୍ତି ଯେ ସେ ସବୁଠାରେ ଏକରକମ ତାଙ୍କରି ରାଜତ୍ୱ ଚାଲିଛି ବୋଲି କହିବାକୁ ହେବ । ସେ ସବୁଠାରେ ସରକାରୀ କଳ ଅକର୍ମଣ୍ୟ ହୋଇ ପଡ଼ିଛି । ଆନ୍ଧ୍ର ପ୍ରଦେଶର ଏହି ପ୍ରକାରର ଅଞ୍ଚଳ ବିଷୟରେ ଏପରି ଖବର ପ୍ରାୟ ଖବର କାଗଜରେ ବାହାରୁଛି ।

ଶାନ୍ତି ସ୍ଥାପନା ନାଁରେ ସରକାରଙ୍କର ଯେଉଁ ଦମନଲୀଳା ଚାଲିଛି ତାହା ନିଆଁରେ ଘିଅ ଢାଳିଲା ପରି ହେଉଛି । ତଥାକଥିତ ଉପଦ୍ରବକାରୀ ଲୋକଙ୍କୁ ଧରିନେଇ ଗୁଳିକରି ମାରିଦେବା ପୋଲିସବାଲାଙ୍କର ସାଧାରଣ ଅଭ୍ୟାସରେ ପରିଣତ ହେଲାଣି । ଶାସନ କ୍ଷମତାରେ ବସିଥିବା ନେତାମାନେ ବାରମ୍ବାର ଏହା କହୁଥିବାର ଶୁଣିବାକୁ ମିଳୁଛି ଯେ, ଏପରି ସବୁ ଅଞ୍ଚଳରେ ସମସ୍ୟାର ସମାଧାନ ଲାଗି ପ୍ରଭାବପୂର୍ଣ୍ଣ ପଦକ୍ଷେପ ନିଆଯାଉଛି । କିନ୍ତୁ ଏପରି ପଦକ୍ଷେପ ନିଆଯାଉ

ନାହିଁ । ଏପରି ପଦକ୍ଷେପ ପାଇଁ ଆଜିକାଲିର ଶାସନ ତଥା ଆର୍ଥିକ ବ୍ୟବସ୍ଥାରେ ଦୂରଗାମୀ ପରିବର୍ତ୍ତନ କରିବାକୁ ହେବ ଯେଉଁଥିରେ କି ଶକ୍ତିଶାଳୀ ନ୍ୟସ୍ତ ସ୍ୱାର୍ଥ-ମାନଙ୍କ ଉପରେ ଶକ୍ତ ଆଘାତ କରିବା ଦରକାର ହେବ । ଏବେ ନିଜ ଗୋଡ଼ରେ କୁରାଢ଼ୀ ମାରିବା ପାଇଁ କେଉଁ ଦଳର ସରକାର ସହଜରେ ପ୍ରସ୍ତୁତ ହେବ ?

## ବିଚ୍ଛିନ୍ନତାବାଦୀ ହିଂସା

ପଞ୍ଜାବରେ ଖଲିସ୍ତାନ ତଥା କାଶ୍ମୀରରେ ଆଜାଦ କାଶ୍ମୀର ଆନ୍ଦୋଳନ ମଝିରେ ବହୁତ ଜୋରରେ ହେଉଥିଲା । ଆସାମରେ ଉଲଫା ନାମକ ସଂଗଠନ-"ଆସାମ ସଂଯୁକ୍ତ ମୁକ୍ତି ମୋର୍ଚ୍ଚା"ର—ଆନ୍ଦୋଳନ ମଧ୍ୟ ଉଗ୍ରାନକ ରୂପ ଧରିଛି । ବୋଡ଼ୋଲାଣ୍ଡ, ଝାଡ଼ଖଣ୍ଡ ଆଦିର ଆନ୍ଦୋଳନ ଏ ପ୍ରକାର ଅଲଗା ହେବାର ଆନ୍ଦୋଳନ ନୁହେଁ । ଏସବୁ ଆନ୍ଦୋଳନ ଅଲଗା ରାଜ୍ୟ ପାଇଁ । କିନ୍ତୁ ଏସବୁ ଯୋଗୁଁ ମଧ୍ୟ କିଛି କମ୍ ଅଶାନ୍ତି ସୃଷ୍ଟି ହେଉ ନାହିଁ ।

## ପଞ୍ଜାବର ସମସ୍ୟା

ପଞ୍ଜାବ ଓ କାଶ୍ମୀର ସମସ୍ୟାଗୁଡ଼ିକୁ ଗତ ଆଠ ଦଶ ବର୍ଷ ଧରି ନିଜ ଆଖି ଆଗରେ ଉଗ୍ର ରୂପ ଧାରଣ କରିବାର ଆମେ ଦେଖିଛୁ । ଦେଶର ସେ ସମୟର ଶାସକ ବର୍ଗଙ୍କ ଦ୍ୱାରା ଦଳୀୟ ସ୍ୱାର୍ଥ ହାସଲ କରିବା ପାଇଁ ଅତ୍ୟନ୍ତ ସଙ୍କୁଚିତ ଦୃଷ୍ଟିରେ ପଞ୍ଜାବର ସମସ୍ୟା ସବୁକୁ ଦେଖାଗଲା, ଏହା ସହିତ ଖେଳାଗଲା । ୧୯୭୭ ସାଲର ନିର୍ବାଚନ ଜିତି ଯେତେବେଳେ ପଞ୍ଜାବରେ ଅକାଳୀ ଦଳ ଓ ଜନତା ପାର୍ଟି ମିଳିତ ସରକାର ଗଠନ କଲେ ସେତେବେଳେ ତାଙ୍କୁ ହଇରାଣ କରିବାପାଇଁ ସନ୍ଥ ଭିନ୍ଦ୍ରନୱାଲାଙ୍କୁ ଇନ୍ଦିରା ଗାନ୍ଧୀ ଖାଲିସ୍ତାନ ଦାବୀ ଜୋରସୋରରେ ଉଠାଇବା ପାଇଁ ଉତ୍ସାହିତ କଲେ ଅନ୍ୟ ପକ୍ଷରେ ନଦୀପାଣିର ବଣ୍ଟନ, ପଞ୍ଜାବୀ ଭାଷୀ ଇଲାକାର ପଞ୍ଜାବରେ ମିଶ୍ରଣ ତଥା ରାଜଧାନୀ ଚଣ୍ଡିଗଡ଼କୁ ପଞ୍ଜାବକୁ ହସ୍ତାନ୍ତର ଆଦି କିଛି ଯଥାର୍ଥ ଦାବୀକୁ ଏଡ଼ାଇ ଦେବା ସାଙ୍ଗକୁ ଆନ୍ଦୋଳନକୁ ସାଂପ୍ରଦାୟିକ ରୂପ ଦେବାପାଇଁ ଚେଷ୍ଟା ହେଲା । ପୁଣି ଯେତେବେଳେ ଖାଲିସ୍ତାନ ଆନ୍ଦୋଳନ ପ୍ରବଳ ହେଲା ସେତେବେଳେ ସରକାର ବିବ୍ରତ ହୋଇ ଅପରେଶନ୍ ବ୍ଲୁଷ୍ଟାର୍ ନାମରେ ଅମୃତସରର ସ୍ୱର୍ଣ୍ଣମନ୍ଦିର ତଥା ପଞ୍ଜାବର ଅନ୍ୟାନ୍ୟ ସାମରିକ କାର୍ଯ୍ୟାନୁଷ୍ଠାନ ଦ୍ୱାରା ଘୋର ଅତ୍ୟାଚାର କରିବା ଫଳରେ ଶିଖମାନଙ୍କର ଧର୍ମଭାବ ତଥା ଆତ୍ମସମ୍ମାନ ଉପରେ ଗଭୀର ଆଘାତ ହେଲା । ଏ ସମସ୍ତ ଲମ୍ବା ବ୍ୟଥାଭରା କାହାଣୀ କହିବାକୁ ଏଠାରେ ସ୍ଥାନ ନାହିଁ । କିନ୍ତୁ ରାଜୀବ ଗାନ୍ଧୀ ଶାସନ କ୍ଷମତାକୁ ଆସିବା ପରେ ସେ ସନ୍ଥ ଲଙ୍ଗୋୱାଲଙ୍କ ସହ ବୁଝାମଣା କରିଥିବା କଥାଗୁଡ଼ିକୁ କାର୍ଯ୍ୟରେ ପରିଣତ କଲେ ନାହିଁ । ହରିୟାଣାର ବିଧାନସଭା ନିର୍ବାଚନ ଉପରେ

ପ୍ରଭାବ ପକାଇବା ପାଇଁ ପଞ୍ଜାବର ବର୍ତ୍ତମାନ ମନ୍ତ୍ରୀମଣ୍ଡଳକୁ ବରଖାସ୍ତ କରାଗଲା । ଖାଲିସ୍ତାନର ସମର୍ଥକମାନେ ଲୋକଙ୍କ ମଧ୍ୟରେ ଥିବା ଅସନ୍ତୋଷରୁ ଫାଇଦା ଉଠାଇବାକୁ ଚାହିଁଲେ । ଆତଙ୍କ ବିସ୍ତାର ପାଇଁ ହତ୍ୟାକାଣ୍ଡ ଚାଲିଲା । ପୁଲିସ ଓ ସେନା ବାହାରେ ପରିସ୍ଥିତିକୁ ଆୟତ୍ତ କରିବାପାଇଁ ଆତଙ୍କର ସାହାଯ୍ୟ ନେଲେ । କୌଣସି ଯୁବକକୁ ସନ୍ଦେହ କଲି ମାନେ ଧରି ନେଇ ଗୁଳିକରି ମାରି ଦେବା, ଏବଂ ପ୍ରଚାର କରିବା ଯେ ସେ ଆତଙ୍କବାଦୀ ଥିଲା ଓ ପୁଲିସ ସହ ସଂଘର୍ଷରେ ପ୍ରାଣ ହରାଇଲା ବୋଲି ସଫେଇ ଦେବା ଏବେ ମଧ୍ୟ ଚାଲିଛି । ଏହା ଦ୍ୱାରା ପ୍ରତିଶୋଧ-ପରାୟଣ ହୋଇ ମୃତ ବ୍ୟକ୍ତିଙ୍କର ପରିବାର କିମ୍ବା ବନ୍ଧୁବାନ୍ଧବଙ୍କ ଭିତରୁ ଦଶଜଣ ନୂଆ ଆତଙ୍କବାଦୀ ସୃଷ୍ଟି ହେଉଛନ୍ତି । ଏବେ ସେଠାରେ ଯେଉଁ ବିଧାନ ସଭା ନିର୍ବାଚନ ହେଲା ସେଥିରେ କଂଗ୍ରେସ (ଇ) ପୁରା ଜାଲ ଭୋଟର ସାହାଯ୍ୟ ନେଇ ଜିତିଲା ।

## କାଶ୍ମୀରର ସମସ୍ୟା

ଏହା ପଞ୍ଜାବରୁ ମଧ୍ୟ ଅଧିକ ଜଟିଳ ଓ ଭୟଙ୍କର ସମସ୍ୟା ହୋଇ ପଡ଼ିଲାଣି । ସମୟ ଥିଲା, ଯେତେବେଳେ କାଶ୍ମୀର ହିନ୍ଦୁ-ମୁସ୍‌ଲିମ୍ ଏକତାର ଦୁର୍ଗ ଥିଲା । ଭାରତବର୍ଷର ଅନ୍ୟତ୍ର ସାଂପ୍ରଦାୟିକ ହିଂସାକାଣ୍ଡ ପ୍ରବଳ ଆକାର ଧାରଣ କରିଥିବା ବେଳେ ବି କାଶ୍ମୀରରେ କୌଣସି ପ୍ରକାରର ହିଂସା ଓ ଅଶାନ୍ତି ନ ଥିଲା । କିନ୍ତୁ ଦେଖୁ ଦେଖୁ କେତେ ବର୍ଷ ଭିତରେ ଏହାର ସ୍ଥିତି ବିଗିଡ଼ିବାରେ ବା ବିଗାଡ଼ି ଦିଆଯିବାରେ ଲାଗିଛି, ଏଠାରେ ସାରା ଇତିହାସ ବର୍ଣ୍ଣନା କରିବାର ଅବକାଶ ନାହିଁ, କିନ୍ତୁ ଏତିକି କୁହାଯାଇ ପାରେ ଯେ କ୍ଷମତାର ଲୋଭରେ ସେଠାରେ ଗଣତନ୍ତ୍ର ସହିତ ଖେଳ ଖେଳା ଯାଇଛି । ସେଠାରେ ନିର୍ବାଚନରେ ଏତେ ବେଶୀ ପରିମାଣରେ ଦୁର୍ନୀତି ହେଲା ଯେ ମତଦାନର ଅଧିକାର ଏକ ପ୍ରହସନ ହୋଇଗଲା । ଭାରତ ସରକାର ଦ୍ୱାରା ପ୍ରତିବର୍ଷ ବହୁତ ବଡ଼ ପରିମାଣର ଅର୍ଥ ଏଠାକୁ ସାହାଯ୍ୟ ଆକାରରେ ପଠାଯାଉଛି, କିନ୍ତୁ ଏଥିରୁ ଅଧିକାଂଶ ଆତ୍ମସାତ୍ ହେଉଛି । ସାଂପ୍ରଦାୟିକତାକୁ ଉତ୍ସାହିତ କରାଗଲା । ପରିଣାମ ଆଜିର ପରିସ୍ଥିତି, ଯେଉଁଥିରେ କି ବ୍ୟାପକ ଅସନ୍ତୋଷ ବ୍ୟାପିବାରେ ଲାଗିଛି ଓ ସେଥିରୁ ଫାଇଦା ଉଠାଇବାକୁ ପାକିସ୍ତାନ ଚେଷ୍ଟା ଚଳାଇଛି ।

ଆତଙ୍କବାଦୀମାନଙ୍କ ଦମନ ପାଇଁ ଏଠାରେ ପୁଲିସ ଓ ସେନାବାହିନୀ ଯେଉଁ ପ୍ରକାରର ଆଚରଣ କରୁଛନ୍ତି ସେଥିରେ ଏଠାରେ ଜନସାଧାରଣଙ୍କ ସଙ୍ଗେ ଯୁଦ୍ଧରେ ପରାଜିତ ଦେଶର ଲୋକଙ୍କ ସହ ଯେପରି କରାଯାଏ ସେହିପରି ବ୍ୟବହାର କରାଯାଉଛି । ସେଠାରେ ମଧ୍ୟ ଯୁବକମାନଙ୍କୁ ଧରିନେଇ, ମାରିଦିଆଯାଉଛି ଓ କୁହାଯାଉଛି ଯେ ସେମାନେ ସନ୍ତ୍ରାସବାଦୀ, ପୁଲିସ ସହିତ ଖଣ୍ଡ ଯୁଦ୍ଧରେ

ମରିଛନ୍ତି । ସ୍ତ୍ରୀଲୋକଙ୍କ ଉପରେ ବଳାତ୍କାର ଘଟଣା ମଧ୍ୟ ହେଉଛି । ଲୋକଙ୍କୁ ମାର୍‌ପିଟ୍ କରି ସେମାନଙ୍କୁ ବଶକୁ ଆଣିବାର ଚେଷ୍ଟା କରାଯାଉଛି । ଏପରି କୌଣସି କାମ କରାଯାଉନାହିଁ ଯାହାଦ୍ୱାରା ଭାରତର ଜନତା ଓ ସରକାରଙ୍କ ପ୍ରତି ସେଠାର ଲୋକଙ୍କ ମନରେ ଆଦର ତଥା ସମ୍ମାନର ଭାବ ଓ ଏହି ବିଶ୍ୱାସ ଜନ୍ମିବ ଯେ ଭାରତ ସରକାର ନ୍ୟାୟ ମାର୍ଗରେ ଚାଲିଛନ୍ତି, ଏହାଠାରୁ ନ୍ୟାୟ ମିଳିପାରିବ ।

## ଅନ୍ୟାନ୍ୟ ସମସ୍ୟା

ପଶ୍ଚିମ ବଙ୍ଗଳାର ବାମମୋର୍ଚ୍ଚା ସରକାରଙ୍କୁ ଅସୁବିଧାରେ ପକାଇବା ପାଇଁ କେନ୍ଦ୍ରରେ ଶାସନ କରୁଥିବା ନେତାମାନେ ଗୋର୍ଖାଲ୍ୟାଣ୍ଡ ଆନ୍ଦୋଳନକୁ ଉତ୍ସାହିତ କଲେ । ପରେ ଏହାର ନେତା ଶ୍ରୀ ସୁଭାଷ ଘିସିଙ୍ଗଙ୍କୁ ଭାରତ ସରକାର ସମ୍ମାନିତ ମଧ୍ୟ କଲେ । ଆସାମରେ ଗଣପରିଷଦ ସରକାରର ବିରୁଦ୍ଧରେ ବୋଡ଼ୋ ଆନ୍ଦୋଳନକୁ ମଧ୍ୟ ଏହି ପ୍ରକାରର ପରୋକ୍ଷ ସମର୍ଥନ ମିଳିଲା । ଭାରତ ସରକାରଙ୍କର ଗୁପ୍ତଚର ବିଭାଗ ତରଫରୁ ଆନ୍ଦୋଳନକାରୀମାନଙ୍କୁ ତାଲିମ, ହତିଆର ଆଦି ମିଳିବାର ବିଶଦ ବିବରଣୀ ଖବରକାଗଜରୁ ଦେଖିବାକୁ ମିଳିଲା ।

କଥା ହେଲା ଯେ କ୍ଷମତା ହାସଲ କରିବା ପାଇଁ କ୍ଷମତାକୁ ହାତଛଡ଼ା ହେବାକୁ ନଦେବା ପାଇଁ ଅନୈତିକ ଉପାୟ ଅବଲମ୍ବନ କରାଯାଇଛି ଓ ଏହାର ଏକ ଚରମ ପନ୍ଥା ହେଲା ଲୋକଙ୍କ ଭିତରେ ଥିବା ଅସନ୍ତୋଷର ମୂଳ କାରଣ ଗୁଡ଼ିକ ଦୂର କରିବା ପରିବର୍ତ୍ତେ ଏହି ଅସନ୍ତୋଷକୁ ନିଜର ଫାଇଦା ପାଇଁ ବ୍ୟବହାର କରିବା, ଆଉ ଯେଉଁଠି ଏହି ଅସନ୍ତୋଷ ନିଜ ବିପକ୍ଷରେ ଯାଉଥିବ ସେଠି ତାହାକୁ ନିଷ୍ଠୁର ଭାବରେ ଦମନ କରିବା । ପଞ୍ଜାବ ଓ କାଶ୍ମୀରର ଆତଙ୍କ-ବାଦୀମାନଙ୍କୁ ପାକିସ୍ତାନ ସାହାଯ୍ୟ କରୁଛି । କିନ୍ତୁ ଚିନ୍ତାର ବିଷୟ ଏହା ଯେ, ଏହି ଆତଙ୍କବାଦୀମାନେ କାହିଁକି ଲୋକଙ୍କ ସମର୍ଥନ ଲାଭ କରୁଛନ୍ତି ଯେଉଁଠି ଅସନ୍ତୋଷ କିମ୍ବା ଅଶାନ୍ତିର ଭାବନା ଥାଏ ସେଇଠାରେ ହିଁ ଅନ୍ୟ ରାଷ୍ଟ୍ର ସେଥିରୁ ନିଜର ଫାଇଦା ଉଠାଇପାରେ । କିନ୍ତୁ ଲୋକଙ୍କ ମଧ୍ୟରେ ଅସନ୍ତୋଷ ନଥିଲେ କୌଣସି ବିଦେଶୀ ଶକ୍ତି ତାହା ସୃଷ୍ଟି କରିବା ସମ୍ଭବ ନୁହେଁ ।

## ଫାସିବାଦ

କ୍ଷମତା ହାତକୁ ନେଇ ରାଷ୍ଟ୍ର ଉପରେ ନିଜର ଏକାଧିପତ୍ୟ ସ୍ଥାପନ କରିବାକୁ ଚାହୁଁଥିବା ଆନ୍ଦୋଳନକୁ ଯାହା କୌଣସି ସଂକୀର୍ଣ୍ଣ ବିଚାରଧାରା ଉପରେ ଆଧାରିତ ଥାଏ, ତାକୁ ଫାସିବାଦ ବା ନାତ୍‌ସୀବାଦ କୁହାଯାଏ । ୧୯୩୦-୪୫ ଜର୍ମାନୀରେ ହିଟଲର୍‌ଙ୍କର ନାତ୍‌ସୀ ଆନ୍ଦୋଳନର

ପ୍ରଭାବ ବଢ଼ୁଥିଲା । ସାରା ଦୁନିଆର କଳା, ହଳଦିଆ ମିଶିଆ ଆଦି ଅନ୍ୟସବୁ ମାନବବଂଶଠାରୁ ଗୋରା ଲୋକେହିଁ ଶ୍ରେଷ୍ଠ ବୋଲି ନାତ୍ସୀମାନେ ପ୍ରଚାର କରୁଥିଲେ । ଏହି ଗୋରା ଲୋକଙ୍କ ଭିତରେ ପୁଣି ଇୟୁରୋପର ନର୍ଡ଼ିକ ବଂଶର ଲୋକେ ସର୍ବଶ୍ରେଷ୍ଠ ଓ ତେଣୁ ସେମାନଙ୍କର ପୃଥିବୀ ଉପରେ ରାଜତ୍ୱ କରିବାର ଅଧିକାର ଈଶ୍ୱରଦତ୍ତ ବୋଲି ଦାବୀ କରାଯାଉଥିଲା । ୟୁରୋପରେ ବସବାସ କରୁଥିବା ଇହୁଦୀମାନଙ୍କୁ ହିଟଲର ସଭ୍ୟତା ଓ ସଂସ୍କୃତିର ସବୁଠାରୁ ବଡ଼ ଶତ୍ରୁ ବୋଲି ଭାବୁଥିଲେ ଓ ୧୯୧୪-୧୮ର ପ୍ରଥମ ମହାଯୁଦ୍ଧରେ ଜର୍ମାନୀର ପରାଜୟ ଓ ପରେ ଦେଖାଦେଇଥିବା ଆର୍ଥିକସଙ୍କଟ ପାଇଁ ଏହି ଇହୁଦୀମାନଙ୍କୁ ହିଟ୍‌ଲର ଦାୟୀ କରିଥିଲେ । ପରାସ୍ତ ହୋଇଥିବା ଜର୍ମାନ୍‌ଲୋକ-ମାନଙ୍କ ମନରେ ଥିବା ସମ୍ମାନହାନୀର ଗ୍ଲାନି ତଥା ଆର୍ଥିକସଙ୍କଟର ସୁଯୋଗ ନେଇ ସେ ବହୁତ ବଡ଼ ଜନସମର୍ଥନ ହାସଲ କରି କ୍ଷମତା ଦଖଲ କଲେ ଓ ଜର୍ମାନୀର ଗଣତାନ୍ତ୍ରିକ ଶାସନକୁ ବଦଳାଇ ଏକଛତ୍ରବାଦରେ ପରିଣତ କରିଦେଲେ । ନାତ୍ସୀବାଦର ବିରୋଧୀ ତଥା ୟୁହୁଦୀମାନଙ୍କ ଉପରେ ଭୟାନକ ଅତ୍ୟାଚାର ଆରମ୍ଭ କରିଦେଲେ । ସାରା ୟୁରୋପ ଏବଂ ଆଫ୍ରିକାର ଏକ ଅଂଶ ଉପରେ ରାଜତ୍ୱ ବିସ୍ତାର ପାଇଁ ୧୯୩୯ ରେ ସେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ କରିଦେଲେ ଯାହାର କୁପରିଣାମ ସାରା ବିଶ୍ୱକୁ ଭୋଗିବାକୁ ପଡ଼ିଲା । ତାଙ୍କର ହୁକୁମରେ ଜର୍ମାନୀ ତଥା ତାହାଦ୍ୱାରା ଅଧିକୃତ ଆଖପାଖର ଦେଶମାନଙ୍କରେ ଷାଠିଏ ଲକ୍ଷ ୟୁହୁଦୀଙ୍କୁ ହତ୍ୟା କରାଗଲା ।

ସେହି ସମୟରେ ଇଟାଲୀରେ ବେନିତୋ ମୁସୋଲିନୀ ଫାସିଷ୍ଟ ପାର୍ଟିର ସ୍ଥାପନା କଲେ । ସେ ମଧ୍ୟ ଏକଛତ୍ରବାଦରେ ବିଶ୍ୱାସୀ ଥିଲେ । ଇଟାଲୀରେ ସେ ଏହି ଏକଛତ୍ରବାଦୀ ଶାସନ ପ୍ରତିଷ୍ଠା କଲେ । ତାଙ୍କ ଶାସନରେ ଭୟାନକ ଦମନଲୀଳା ଚାଲିଲା । ସେ ଦ୍ୱିତୀୟ ମହାଯୁଦ୍ଧରେ ଇଟାଲୀକୁ ସାମିଲ କଲେ । ଏହି ଦୁଇଦେଶ, ଜର୍ମାନୀ ଓ ଇଟାଲୀ, ଆପଣାକୁ ଅକ୍ଷଶକ୍ତି (ଏକସିସ୍ ପାୱାର) ବୋଲି କହୁଥିଲେ । ଅର୍ଥାତ୍ ବର୍ଲିନ ଓ ରୋମ ହେଲା ଗୋଟିଏ ଅଖର ଦୁଇମୁଣ୍ଡ । ଏହି ଅଖ ବୁଲିଲେ ତାହା ଚାରିପଟେ ସାରା ପୃଥିବୀ ବୁଲିବ ।

ଆଜି ମଧ୍ୟ ଦୁନିଆରେ ଏପରି କ୍ଷମତାଲୋଭୀ ବ୍ୟକ୍ତି ତଥା ଗୋଷ୍ଠୀ ଅଛନ୍ତି, ଯେଉଁମାନେ କି ଭାଷା, ଧର୍ମ, ରଙ୍ଗ ଆଦି କୌଣସି ଗୋଟିଏ ଭେଦରୁ ଲାଭ ଉଠାଇ ଆପଣାର ଏକଛତ୍ର ଶାସନ ସ୍ଥାପିତ କରିବାକୁ ଚାହୁଁଛନ୍ତି । ଭାରତରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ତଥା ବିଶ୍ୱହିନ୍ଦୁ ପରିଷଦ ଆଦି ଦ୍ୱାରା ହେଉଥିବା ହିନ୍ଦୁରାଷ୍ଟ୍ରର ଦାବୀ ଏହି ପର୍ଯ୍ୟାୟଭୁକ୍ତ । ଏହି ପ୍ରକାରର ଆନ୍ଦୋଳନର ଶେଷ ପରିଣାମ ହେଲା ଏକଛତ୍ରବାଦୀ ଶାସନ ପ୍ରତିଷ୍ଠା । କାରଣ ଗଣତନ୍ତ୍ରରେ ଭାଷା,

ଭାବ, ଜାତ, ଧର୍ମ, ରଙ୍ଗ, ଲିଙ୍ଗ ଆଦିର କୌଣସି ପ୍ରକାରର ଭେଦଭାବ ନ ଥାଇ ସମସ୍ତଙ୍କର ସମାନ ଅଧିକାର ଥାଏ । ଭୋଟ ଦ୍ୱାରା ଶାସନ ବଦଳାଇ ଦେବାର ଅଧିକାର ପ୍ରତ୍ୟେକ ଭୋଟରର ଥାଏ । ଭାଷା, ଧର୍ମ ବା ରଙ୍ଗ କିମ୍ବା ଲିଙ୍ଗର ଭେଦ ଯୋଗୁଁ କାହାରି ଅଧିକାରକୁ କାଢ଼ି ନେବା କେବଳ ଏକଛତ୍ରବାଦରେ ହିଁ ସମ୍ଭବ ।

ଏପର୍ଯ୍ୟନ୍ତ ଆମେ ଏହା ବୁଝାଇବାକୁ ଚେଷ୍ଟା କରୁଛୁ ଯେ ସମାଜର ଗଠନ, ଏହାର ଆର୍ଥିକ ବ୍ୟବସ୍ଥା ଓ ଶାସନ ବ୍ୟବସ୍ଥାର ମୂଳରେ ଯେଉଁ ଭୟଙ୍କର ହିଂସା ନିହିତ ରହିଛି,ଯାହା ମୁଷ୍ଟିମେୟ ଲୋକଙ୍କ ସ୍ୱାର୍ଥସିଦ୍ଧି ପାଇଁ କୋଟି କୋଟି ଲୋକଙ୍କ ଉପରେ ଅସହାୟତା, ଅସମ୍ମାନ, ବେକାରି, ଭୋକଉପାସ ଆଦି ଲଦି ଦେଉଛି ତାହାର ନିରାକରଣ ବିନା ମାନବ ସମାଜରୁ ହିଂସା ନିର୍ମୂଳ ହେବା ସମ୍ଭବ ନୁହେଁ । ଆମର ଦୃଷ୍ଟି ସାଧାରଣତଃ ଏ ଦିଗରେ ପଡୁନଥିବାରୁ ଏ ସବୁକୁ ଆମେ ଉଚିତ ଓ ଆବଶ୍ୟକ ବୋଲି ଭାବନେଉ, କାହିଁକି ନା କ୍ଷମତାସୀନମାନଙ୍କ ଦ୍ୱାରା ବା ସମାଜର ଗଣ୍ୟମାନ୍ୟ ଲୋକଙ୍କ ଦ୍ୱାରା ଏହା ହୋଇଆସୁଛି । ବ୍ୟକ୍ତିର ସମ୍ମାନ, ତା'ର ଅଧିକାର ତଥା ପ୍ରତିଷ୍ଠା ବିଷୟରେ ଆମର ଧାରଣା ଅସ୍ପଷ୍ଟ ହୋଇଥାଏ ।

## ଶାସନ କ୍ଷମତାର ସୀମା

ବହୁ ଲୋକେ ଏ କଥା ବିଶ୍ୱାସ କରନ୍ତି ଯେ ସରକାରକୁ ବଳପ୍ରୟୋଗର ଅଧିକାର ଦିଆଯାଇଥିବାରୁ ତାହା ଯେପରି ଚାହିଁବ, ସେହିପରି ଭାବେ ବଳପ୍ରୟୋଗ କରିପାରିବ । ଯେଉଁ ଦେଶରେ ଗଣତନ୍ତ୍ର ଶାସନ ଦୀର୍ଘକାଳ ଧରି ଚାଲି ଆସୁଛି ଓ ଯେଉଁଠି ମାନବୀୟ ମୂଲ୍ୟବୋଧଗୁଡ଼ିକର ପ୍ରତିଷ୍ଠା ପାଇଁ ନାନା ଆନ୍ଦୋଳନ ଚାଲୁଛି, ସେଠାରେ ଗତ କେତେ ଦଶନ୍ଧିରେ ଶାସନର ବଳ ପ୍ରୟୋଗର ଅଧିକାର ଉପରେ ବହୁତ କଟକଣା ହୋଇଛି । ସରକାରର ମୁକାବିଲାରେ ଲୋକଙ୍କ ଅଧିକାରକୁ ଅଧିକ ବଳବାନ କରି ଦିଆଯାଇଛି । ଆମ ଦେଶର ସମ୍ବିଧାନରେ ଲୋକଙ୍କର ମୌଳିକ ଜନ୍ମଗତ ଅଧିକାର ସବୁ ସ୍ୱୀକୃତ ହୋଇଛି । ମାତ୍ର ଏସବୁ ଉପରେ ସରକାରଙ୍କ ପକ୍ଷରୁ ବରାବର ଆକ୍ରମଣ ଚାଲିଛି । ଜରୁରୀକାଳୀନ ପରିସ୍ଥିତି ବା ଇମର୍ଜେନ୍‌ସୀ ବେଳେ ତ ଏସବୁକୁ ପୂରାପୂରି ବାତିଲ କରି ଦେବାର ଚେଷ୍ଟା ବି ପ୍ରାୟ ସଫଳ ହୋଇଥିଲା । ଏସବୁର ମହତ୍ତ୍ୱ ଉପଲବ୍ଧି କରାଯାଇ ଏ ସବୁର ପୁନଃପ୍ରତିଷ୍ଠା ତ କରାଗଲା କିନ୍ତୁ ଏହାର ସୁରକ୍ଷା ପାଇଁ ଆବଶ୍ୟକୀୟ ଶକ୍ତି ଏପର୍ଯ୍ୟନ୍ତ ଲୋକଙ୍କ ଭିତରେ ଗଢ଼ି ଉଠି ନାହିଁ । ମନେ ରଖିବାକୁ ହେବ ଯେ କେହି ଯଦି ଜୋରଜୁଲମ କରେ କି ଆତଙ୍କବାଦୀ ହୋଇଯାଏ ତେବେ ସେ ଆଇନର ବିରୋଧରେ ଯାଏ । ଆଇନର ମର୍ଯ୍ୟାଦା ରକ୍ଷା କରିବା ସରକାରଙ୍କର କର୍ତ୍ତବ୍ୟ ।

ସେ ଆଇନର ଶୃଙ୍ଖଳା ଭିତରୁ ବାହାରକୁ ଯାଇ ପାରିବେ ନାହିଁ । ଆତଙ୍କବାଦୀ-ମାନେ କେଉଁଠି କେଉଁଠି କାହାକୁ ଧରି ନେଇ ମାରିଦେଲେ ତ ସରକାରଙ୍କର ସୁରକ୍ଷାବାହିନୀ ମଧ୍ୟ କେତେକ ଲୋକଙ୍କୁ ଧରିନେଇ ସେମାନଙ୍କୁ ଆତଙ୍କବାଦୀ ବୋଲି କହି ଗୁଳିକରି ମାରି ଦେଉଛନ୍ତି, ଏହା କଦାପି ସହ୍ୟ କରାଯିବା କଥା ନୁହେଁ । ଯଦି ଗୁଣ୍ଡାଗିରି ବନ୍ଦ କରିବା ନାଁରେ ପୁଲିସ ବି ଗୁଣ୍ଡାଗିରି କରିବେ, ତେବେ ତାହା ସଭ୍ୟ ଲୋକତାନ୍ତ୍ରିକ ସରକାର ହୋଇ ରହିବ ନାହିଁ । କେହି ଆଇନ ଭଙ୍ଗ କଲେ ବିଚାରାଳୟରେ ବିଚାର ହୋଇ ସେ ଦୋଷୀ ସାବ୍ୟସ୍ତ ହେଲେ ଯାଇ ତାଙ୍କୁ ବିଚାରପତି ଆଇନସମ୍ମତ ଦଣ୍ଡ ଦେବେ । ପୁଲିସର କାମ ଅପରାଧୀଙ୍କୁ ଦଣ୍ଡ ଦେବା ନୁହେଁ, ସନ୍ଦିଗ୍ଧ ଲୋକଙ୍କୁ ଧରି ବିଚାରାଳୟରେ ହାଜର କରାଇବା । ସେଥିରେ ଏକଛତ୍ରବାଦର ଦୁର୍ଗୁଣ ପ୍ରବେଶ କରିଛି ବୋଲି ବୁଝିବାକୁ ହେବ ।

## କ୍ରାନ୍ତିକାରୀ ହିଂସା

ସମାଜରେ ନ୍ୟାୟ ଓ ସମତା ସ୍ଥାପିତ ହେଉ, ସେଥିରୁ ଶୋଷଣ, ଭେଦ-ଭାବ ଓ ଯୁଦ୍ଧ ଲୋପ ପାଇଯାଉ, ସାରା ମାନବ ସମାଜ ମିଳିମିଶି ପରସ୍ପର ଶାନ୍ତି ଓ ସଦ୍‌ଭାବରେ ବଞ୍ଚି ରହନ୍ତୁ, ସମସ୍ତଙ୍କୁ ଆଧୁନିକ ଜ୍ଞାନବିଜ୍ଞାନର ଲାଭ ମିଳୁ ଓ ସମସ୍ତଙ୍କର ଜୀବନ ସମୃଦ୍ଧ ହେଉ ଏଥିପାଇଁ ରୁଷ, ଚୀନ ଓ ଅନ୍ୟାନ୍ୟ ସାମାଜିକ କ୍ରାନ୍ତି ହୋଇଛି । କ୍ରାନ୍ତିକାରୀମାନଙ୍କ ହାତକୁ କ୍ଷମତା ଆସିଲା । ନୂତନ ସମାଜ ଗଢ଼ିବା କାମ ଜୋରସୋର୍‌ରେ ଆଗକୁ ବଢ଼ିଚାଲିଲା । କିନ୍ତୁ ଦେଖାଗଲା ଯେ କ୍ଷମତାରେ ବସିଥିବା କମ୍ୟୁନିଷ୍ଟ ଶାସକମାନଙ୍କର ଏକଛତ୍ରବାଦ ଓ ହିଂସା ଅନ୍ୟ କୌଣସି ଘୃଣ୍ୟ ଏକଛତ୍ରବାଦୀଙ୍କଠାରୁ କମ୍ ନୁହେଁ । ପରିଣାମ ହେଲା ଯେ ସୋଭିଏତ୍ ସଂଘ ତଥା ପୂର୍ବ ୟୁରୋପର ଦେଶଗୁଡ଼ିକରେ କମ୍ୟୁନିଷ୍ଟ ଶାସନ ଏବଂ ଅର୍ଥନୀତି ଭୁସୁଡ଼ିବାରେ ଲାଗିଲା । ଲୋକମାନଙ୍କ ମଧ୍ୟରେ ସାମ୍ୟବାଦ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ଜନ୍ମିଲା ଓ ଗଣତାନ୍ତ୍ରିକ ଅଧିକାର ତଥା ଶାସନର ଦାବୀ ପ୍ରବଳ ହେଲା ।

ଏବେ ଏପରି କାହିଁକି ହେଲା ? ନୂତନ ସମାଜ ଗଠନ କରିବାକୁ ଚାହୁଁଥିବା, ବୁଝିବା ସୁଝିବା ଲୋକେ ହିଂସା ଓ ଦମନର ଦୁଷ୍ଟଚକ୍ରରେ କାହିଁକି ପଡ଼ିଲେ ?

ଏହା ବୁଝିବା ପାଇଁ ଟିକିଏ ଗଭୀରକୁ ଯିବାକୁ ପଡ଼ିବ, ମାନବ ସମାଜର ଆଦିମ ଯୁଗରେ ସମାଜରେ ଶାନ୍ତି ଓ ଶୃଙ୍ଖଳା ବଜାୟ ରଖିବା ପାଇଁ ଦୁଇଟି ପରସ୍ପର ବିରୋଧୀ ସାଧନର ଉପଯୋଗ କରାଯାଇଛି । ଗୋଟିଏ ପ୍ରେମ ଓ ଅନ୍ୟଟି ଭୟ । ଭ୍ରାତୃଭାବ, ସହଯୋଗ, ସହାନୁଭୂତି, ସେବାଭାବ, ଏ ସମସ୍ତ ହେଲା ପ୍ରେମର

ବିଭିନ୍ନ ଅଭିବ୍ୟକ୍ତି । ଧର୍ମ ପ୍ରବର୍ତ୍ତକ ମହାପୁରୁଷମାନେ ପ୍ରେମର ବାର୍ତ୍ତା ଦୁନିଆକୁ ଦେଲେ ଓ ଲକ୍ଷ ଲକ୍ଷ, କୋଟି କୋଟି ଲୋକଙ୍କ ହୃଦୟକୁ ଯୋଡ଼ିବାରେ ସଫଳ ହେଲେ । ଶହ ଶହ, ହଜାର ହଜାର ଗୋଷ୍ଠ ଗୋଷ୍ଠ ଗୋଷ୍ଠୀ ବା ବସତିରେ ରହୁଥିବା ଲୋକେ ପରସ୍ପର ସହ ଯୁକ୍ତ ହେଲେ, ଏକ ବୃହତ୍ତର ସମାଜର ଅଙ୍ଗ ହେଲେ ଏବଂ ଲକ୍ଷ ଲକ୍ଷ, କୋଟି କୋଟି ଲୋକଙ୍କୁ ନିଜ ମଧ୍ୟରେ ସମ୍ମିଳିତ କରୁଥିବା ଧର୍ମ ତଥା ସଂସ୍କୃତିର ଜନ୍ମ ହେଲା ।

ମହାପୁରୁଷମାନେ ଲୋକଙ୍କୁ ଆତ୍ମ ଶାସନ ବା ସଂଯମ ଓ ପରର ହିତ ପାଇଁ ନିଜ ସ୍ୱାର୍ଥକୁ ସଙ୍କୁଚିତ କରିବା ବା ତ୍ୟାଗର ଆବଶ୍ୟକତା ଲୋକଙ୍କୁ ବୁଝାଇବାକୁ ଲାଗିଲେ । ଏହାର ସୁଦୂର ପ୍ରସାରୀ ପ୍ରଭାବ ପଡ଼ିଲା । କିନ୍ତୁ ସମାଜର ବ୍ୟବସ୍ଥା ଚଳାଇଲାବାଲା ଲୋକେ ଭୟର ମଧ୍ୟ ଆବଶ୍ୟକତା ଅଛିବୋଲି ବିଚାରିଲେ । ଶାସନ ବଳପ୍ରୟୋଗର ସହାୟତା ନେଇ ସମାଜରେ ଶାନ୍ତି, ଶୃଙ୍ଖଳା ବଜାୟ ରଖିବାକୁ ଚେଷ୍ଟା କଲା । ଧାର୍ମିକ ପରମ୍ପରାରେ ମଧ୍ୟ ସ୍ୱର୍ଗ ପ୍ରାପ୍ତିର ଲୋଭ ଓ ନରକର ଭୟର ଉପଯୋଗ କରାଗଲା । ଏହି ଅନୁଭବରୁ ଭୟ ଓ ହିଂସାକୁ ସମାଜକୁ ରକ୍ଷା କରିବା ପାଇଁ ଆବଶ୍ୟକ ଓ ଯଥାର୍ଥ ବୋଲି ଧରି ନିଆଗଲା । ହିନ୍ଦୁ ପରମ୍ପରାରେ ରାମ, କୃଷ୍ଣ, ଅର୍ଜୁନ ଆଦିଙ୍କ ଦ୍ୱାରା କରାଯାଇଥିବା ଯୁଦ୍ଧ ଆଦିକୁ ଧର୍ମ ସଂସ୍ଥାପନାର୍ଥ ଆବଶ୍ୟକ ବୋଲି ମାନ୍ୟତା ଦିଆଗଲା । ଇସଲାମର ପରମ୍ପରାରେ ପୟଗମ୍ବର ହଜରତ ମହମ୍ମଦ ତଥା ଅନ୍ୟମାନେ ଧର୍ମକୁ ବଞ୍ଚାଇବା ପାଇଁ ଯୁଦ୍ଧ ଇତ୍ୟାଦି କରିଥିଲେ । ଏହି ପ୍ରକାରରେ ହିଂସାକୁ ମାନ୍ୟତା ଦିଆଯିବା ଅନ୍ୟ ପରମ୍ପରାରେ ମଧ୍ୟ ଦେଖିବାକୁ ମିଳେ । ସେ ସମୟରୁ ନେଇ ଆଜି ପର୍ଯ୍ୟନ୍ତ ସମାଜରେ ଶାନ୍ତି ଶୃଙ୍ଖଳା ବଜାୟ ରଖିବା ପାଇଁ ହିଂସା ଆବଶ୍ୟକ ବୋଲି ଅଧିକାଂଶ ଲୋକ ବିଶ୍ୱାସ କରନ୍ତି । ମାତ୍ର ଯେତେବେଳେ ଶାସନ, ସମାଜରଚନା କିମ୍ବା ଅର୍ଥରଚନାର ହିଂସା ଆସି ମୁଣ୍ଡ ଉପରେ ମାଡ଼ି ବସେ, ସେତେବେଳେ ତ୍ରାହି ତ୍ରାହି ଚିତ୍କାର କରନ୍ତି । କିନ୍ତୁ ସେହି ହିଂସାର ଆକ୍ରମଣରୁ ରକ୍ଷା ପାଇବା ପାଇଁ ଅଧିକାଂଶ ଲୋକେ ହିଂସାତ୍ମକ ପନ୍ଥାକୁ ହିଁ ଉଚିତ ବୋଲି ବିଚାରିଥାନ୍ତି । ଏହି ରୂପେ ହିଂସା ଅର୍ଥାତ୍ ଭୟର ରାଜତନ୍ତ୍ରର ପରମ୍ପରା ହିଁ ଆଗେଇ ଚାଲିଥାଏ ।

## ଗାନ୍ଧୀଜୀଙ୍କ ଅହିଂସା

ଭାତୃଭାବ, ପ୍ରେମ, ସହଯୋଗ ଆଦି ଉପରେ ଆଧାରିତ ଏକ ନୂଆ ସମାଜ ଗଢ଼ା ହେଉ, ଏହି ସ୍ୱପ୍ନ ଦେଖିବାରେ ଗାନ୍ଧୀଜୀ ପୁରୁଣା ଯୁଗର ଧର୍ମପ୍ରବର୍ତ୍ତକ ମହାପୁରୁଷଙ୍କଠାରୁ ଆରମ୍ଭକରି ଏ ସମୟର କାର୍ଲମାର୍କ୍ସ, ଲେନିନ୍ ଆଦିଙ୍କ ଯାଏ ସମସ୍ତ ଆଦର୍ଶବାଦୀଙ୍କଠାରୁ ଭିନ୍ନ ନୁହନ୍ତି । କିନ୍ତୁ ତାଙ୍କର ନୂତନତ୍ୱ ଏଇଥିରେ ଥିଲା ଯେ ସେ ଭୟକୁ, ଅର୍ଥାତ୍ ହିଂସାକୁ, ସମାଜ ରଚନାର ଆଧାର କରିବାକୁ ମନାକରି

ଦେଲେ । ପ୍ରେମ ଅର୍ଥାତ୍ ଅହିଂସାର ଶକ୍ତି ଉପରେ ସେ ଆସ୍ଥା ରଖିଥିଲେ । ସେ ଏହା ମଧ୍ୟ ବିଶ୍ୱାସ କରୁଥିଲେ ଯେ କେବଳ ଆସ୍ଥା ରଖିଲେ କାମ ଚଳିବ ନାହିଁ । ସମସ୍ୟା ଉପସ୍ଥିତ ହେଲେ ତାହାର ସମାଧାନପାଇଁ ଅହିଂସକ ଉପାୟ ଖୋଜିବାକୁ ପଡ଼ିବ, ତାହାର ନବୀକରଣ କରିବାକୁ ପଡ଼ିବ । ସେ ପ୍ରେମକୁ ବିଦ୍ୟୁତ୍‌ଶକ୍ତି ପରି ସମଗ୍ର ବିଶ୍ୱରେ ବ୍ୟାପ୍ତ ଗୋଟିଏ ଶକ୍ତି ରୂପେ ବିଶ୍ୱାସ କରୁଥିଲେ । ଯେପରି ବିଦ୍ୟୁତ୍ ଶକ୍ତିର ବ୍ୟବହାର ଅନେକ ପ୍ରକାର କାମରେ ହୁଏ କିନ୍ତୁ ପ୍ରତ୍ୟେକ ପ୍ରକାରର ଉପଯୋଗର ଉପାୟ ପରୀକ୍ଷା ନିରୀକ୍ଷା ବା ପ୍ରୟୋଗ ଦ୍ୱାରା ଆବିଷ୍କାର କରିବାକୁ ପଡ଼େ ସେହିପରି ପ୍ରେମ ଓ ଅହିଂସା କ୍ଷେତ୍ରରେ ମଧ୍ୟ ପରୀକ୍ଷା ନିରୀକ୍ଷା ଲୋଡ଼ା । ସେ ପ୍ରୟୋଗ ଦ୍ୱାରା ନୂଆ ନୂଆ ସମସ୍ୟା ସବୁର ସମାଧାନ ପାଇଁ ଅହିଂସକ ଉପାୟ ବାହାର କଲେ । ପୂର୍ବକାଳରେ କୌଣସି ଦେଶକୁ ସ୍ୱାଧୀନ ଦେବା ପାଇଁ ହିଂସକ ଯୁଦ୍ଧହିଁ ଏକମାତ୍ର ସଫଳ କାର୍ଯ୍ୟକାରୀ ପନ୍ଥା ବୋଲି ଧରି ନିଆ ଯାଉଥିଲା । କିନ୍ତୁ ଏଥିପାଇଁ ଅହିଂସା ଯେ ଏକ କାର୍ଯ୍ୟକାରୀ ପନ୍ଥା ତାହା ସେ ଭାରତର ସ୍ୱାଧିନତା ପାଇଁ ଅହିଂସାର ପ୍ରୟାଗ କରି ଦେଖାଇଦେଲେ । ସାଂପ୍ରଦାୟିକ ଏକତା ପାଇଁ ଅହିଂସାର ଶକ୍ତିର ସଫଳ ପ୍ରୟୋଗ ସେ କଲେ । ଅର୍ଥରଚନାକୁ ହିଂସା ଓ ଶୋଷଣରୁ ମୁକ୍ତ କରିବାର ଉପାୟ ସେ ଖୋଜିଲେ ଓ ଆମ ଆଗରେ ତାହା ରଖିଲେ । ଶାସନକୁ ମଧ୍ୟ ହିଂସାରୁ ମୁକ୍ତ କରିବା ପାଇଁ, ଏପରିକି ଶାସନର ଆବଶ୍ୟକତାକୁ ମଧ୍ୟ ଲୋପ କରିଦେବାର ଉପାୟ ବିଷୟରେ ସେ ଭାବିଥିଲେ, ପ୍ରୟୋଗ କରିଥିଲେ ଏବଂ ଫଳାଫଳ ଆମ ଆଗରେ ବାଢ଼ିଥିଲେ । ଏହାଛଡ଼ା ଅନ୍ୟ ଅନେକ କ୍ଷେତ୍ରରେ ମଧ୍ୟ ନାନା ପ୍ରୟୋଗ ସେ କରିଥିଲେ । ସମାଜକୁ ଦୁଃଖଦ ଓ ତ୍ରାସଦାୟକ ହିଂସାରୁ ମୁକ୍ତ କରିବାକୁ ହେବ ତ ଗାନ୍ଧୀଜୀଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ପ୍ରଣାଳୀ, ପ୍ରୟୋଗ ଓ କାର୍ଯ୍ୟକ୍ରମଗୁଡ଼ିକୁ ଆମକୁ ଆଗେଇ ନେବାକୁ ହେବ । ଭାରତରେ ତଥା ଅନ୍ୟତ୍ର ହଜାର ହଜାର ଲୋକ ଏହି କାମରେ ଲାଗିଛନ୍ତି, କିନ୍ତୁ ଏହି କାମରେ ଲକ୍ଷ ଲକ୍ଷ ଲୋକଙ୍କ ହୃଦୟ, ବୁଦ୍ଧି ଓ କର୍ମଶକ୍ତି ଲାଗିବାର ଆବଶ୍ୟକତା ଆଜି ରହିଛି ।

## ହିଂସାର ମୂଳ

ଅହିଂସାର ବିକାଶ କରିବାକୁ ହେବ ତ, ହିଂସାର ମୂଳକାରଣ ବୁଝିବା ଦରକାର । ଗୋଟିଏ କାରଣ ତ ଦେଖିଲୁ ଯେ, ସମାଜରେ ଶାନ୍ତି ଶୃଙ୍ଖଳା ବଜାୟ ରଖିବାପାଇଁ ଭୟ ବା ହିଂସା ଆବଶ୍ୟକ ବୋଲି ପ୍ରାୟ ସମସ୍ତେ ଧରି ନେଇଛନ୍ତି । କିନ୍ତୁ ଶାନ୍ତି ଭଙ୍ଗ ହେଉଛି କାହିଁକି ? ଲୋକେ କାହିଁକି ଅନ୍ୟକୁ ଶୋଷଣ କରିବାକୁ ଚାହୁଁଛନ୍ତି ? କାହିଁକି ଅନ୍ୟ ଉପରେ ଶାସନ କରିବାକୁ ଚାହୁଁଛନ୍ତି ?

ଆମର ଧାର୍ମିକ ପରମ୍ପରାରେ ବିଶ୍ୱାସ କରାଯାଏ ଯେ, ମନୁଷ୍ୟର କାମ, କ୍ରୋଧ, ଲୋଭ, ମୋହ, ମଦ ଏବଂ ମାତ୍ସର୍ଯ୍ୟ ଏହି ଛଅଗୋଟି ରିପୁ ରହିଛି, ଯେଉଁମାନଙ୍କୁ ଦମନ କରିବା ଆବଶ୍ୟକ । ଏହିସବୁ ରିପୁ ଯୋଗୁଁ ବ୍ୟକ୍ତି ତଥା ସମାଜ ପାଇଁ ସମସ୍ୟା ସୃଷ୍ଟି ହେଉଛି ଏବଂ ବ୍ୟକ୍ତିର ବିକାଶ ବାଧାପ୍ରାପ୍ତ ହେଉଛି ବୋଲି ବିଶ୍ୱାସ କରାଯାଏ । ସାଧାରଣ ଲୋକେ ଏସବୁକୁ ସଂଯତ କରିବା କଠିନ ମନେ କରିଥାନ୍ତି ।

ଆଧୁନିକ ଯୁଗରେ ଅନେକ ବୈଜ୍ଞାନିକ ହିଂସା ବିଷୟରେ ଗବେଷଣା କରିଛନ୍ତି । ସେମାନଙ୍କ ଭିତରୁ କେତେକଙ୍କର ମତ ଯେ ଭୋକ, ଶୋଷ ଓ କାମ ବାସନା ପରି ହିଂସା ମଧ୍ୟ ଏକ ପ୍ରାକୃତିକ ପ୍ରବୃତ୍ତି । ଏଣୁ ଭୋକ ବା ଶୋଷ ପରି ଏହା ସମସ୍ତ ସମୟରେ ଫୁଟି ବାହାରିବା ସ୍ୱାଭାବିକ । ଅନ୍ୟ କେତେକଙ୍କର ମତ ହେଲା ଯେ ମଣିଷ ଭିତରେ ହିଂସାତ୍ମକ ଆଚରଣ କରିବାର ପ୍ରବୃତ୍ତି ରହିଛି, କିନ୍ତୁ ଏହା ଭୋକ, ଶୋଷ ବା କାମବାସନା ପରି ନୁହେଁ । ଭୋକ, ଶୋଷ ନିର୍ଦ୍ଦିଷ୍ଟ ସମୟର ବ୍ୟବଧାନରେ ଦେଖାଦିଏ । କାମବାସନା ସେହିପରି ବେଳେ ବେଳେ ପ୍ରବଳ ହୁଏ । କିନ୍ତୁ ହିଂସାତ୍ମକ ଆଚରଣର ପ୍ରବୃତ୍ତି ଏପରି ନୁହେଁ । ଚାରି ଘଣ୍ଟାରେ ଥରେ, ଦିନରେ ଥରେ ବା ମାସକରେ କିମ୍ବା ଏକ ବର୍ଷରେ ଥରେ ମାରପିଟ କରିବାର ପ୍ରେରଣା ମଣିଷର ଅନ୍ତରରୁ ଉଠେ ନାହିଁ । ନିଜ ଉପରେ, ନିଜର ପ୍ରିୟଜନଙ୍କ ଉପରେ କିମ୍ବା ସମ୍ପତ୍ତି ଉପରେ ଯଦି ଆକ୍ରମଣ ହୁଏ ତେବେ ହିଂସାତ୍ମକ ପ୍ରତିରୋଧ କରିବାର ପ୍ରେରଣା ମଣିଷ ମନରେ ଅବଶ୍ୟ ଆସିଥାଏ । ସମ୍ପତ୍ତିର ଲୋଭ ବଢ଼ିଗଲେ ତାକୁ କରଗତ କରିବାପାଇଁ ଅନ୍ୟ ଉପରେ ଆକ୍ରମଣ କରିବାର ପ୍ରେରଣା ଜାଗ୍ରତ ହୁଏ ।

ଏ ବିଷୟରେ ଆଉ ଏକ ମତ ମଧ୍ୟ ଅଛି ଯାହାର ମୁଖ୍ୟ ପ୍ରବକ୍ତା ମନୋବୈଜ୍ଞାନିକ ଏରିକ୍ ଫ୍ରମ୍ । ଏ ଗୋଷ୍ଠୀଙ୍କ ମତରେ ମଣିଷ ଭିତରେ ଜନ୍ମରୁ ଏକ ପ୍ରେରଣା ଥାଏ ଯାହାକୁ ସେମାନେ 'ଅତିକ୍ରମ'ର ପ୍ରେରଣା ଆଖ୍ୟା ଦେଇଛନ୍ତି । ଶୈଶବରୁ ହିଁ ମଣିଷ ନିଜର ଅସହାୟତା ଓ ଦୁର୍ବଳତାକୁ ଜିଣିବାକୁ ଚାହିଁଥାଏ ଓ ପ୍ରକୃତି ଓ ପରିବେଶ ଉପରେ ଆଧିପତ୍ୟ ହାସଲ କରିବାକୁ ଚାହିଁଥାଏ । ଶିଶୁ ଯେତେବେଳେ ପେଟାଏ, ଗୁରୁଣ୍ଡେ ଓ ପୁଣି ଚାଲି ଶିଖେ ସେତେବେଳେ ତାହା ଭିତରେ ଏହି ପ୍ରେରଣା କାମ କରୁଥାଏ । ଏହା ରଚନାତ୍ମକ ରୂପରେ ପ୍ରକାଶ ପାଇପାରେ ବା ଧ୍ୱଂସାତ୍ମକ ରୂପରେ । ଚାଷୀ ମାଟି ତାଡ଼ି ଫସଲ ଫଳେଇବାରେ ଏହିପରି ଆଧିପତ୍ୟର ସନ୍ତୋଷ ଅନୁଭବ କରେ, ବୈଜ୍ଞାନିକ କରେ ପ୍ରକୃତିର ରହସ୍ୟ ଉଦ୍‌ଘାଟନରେ, ଶିଳ୍ପୀ ନୂଆ ନୂଆ ଶିଳ୍ପକୃତି ସୃଷ୍ଟିରେ, ଇଞ୍ଜିନିୟର ବଡ଼ ବନ୍ଧ ବା ଭବନ ନିର୍ମାଣରେ, ଡାକ୍ତର ରୋଗୀକୁ ସୁସ୍ଥ କରିବାରେ ।

ମାତ୍ର ଏହି ପ୍ରେରଣା ବିକୃତ ହୋଇଗଲେ ତୈମୁର ଲଙ୍ଗ ଲକ୍ଷେ ଲୋକଙ୍କର ମୁଣ୍ଡ କାଟି ବା ଡକେଇତ ଅତି କୌଶଳର ସହି ବ୍ୟାଙ୍କ ଲୁଟି କରି ନିଜର କୃତିତ୍ୱର ପରିଚୟ ଦେବାକୁ ଚାହେଁ । ଏହି ମତ ଅନୁସାରେ ସବୁ ମଣିଷଙ୍କୁ ଯଦି ପିଲାଦିନୁ ରଚନାତ୍ମକ ଢଙ୍ଗରେ ଏହି ଅହଙ୍କାରର ପ୍ରେରଣା ବା ପରାକ୍ରମ ବୃତ୍ତିକୁ ପ୍ରକାଶ କରିବାର ସୁଯୋଗ ମିଳିବ ତେବେ ସମାଜରୁ ହିଂସାର ପ୍ରାଦୁର୍ଭାବ ବହୁତ କମିଯିବ ।

ପୃଥିବୀରେ ଏପରି ମଣିଷ ସମାଜ ଅଛନ୍ତି ଯେଉଁମାନେ କି କେବେ ବି ଯୁଦ୍ଧ କରିନାହାନ୍ତି, ଯେପରିକି ଏକ୍‌ସିମୋ ଜାତି, ଯେଉଁମାନେ ଗ୍ରୀନଲାଣ୍ଡ ଓ କାନାଡାରେ ବାସ କରନ୍ତି । ଏମାନଙ୍କୁ ଆଶ୍ଚର୍ଯ୍ୟ ଲାଗେ ଯେ, ମଣିଷମାନଙ୍କର ବଡ଼ ବଡ଼ ଦଳ ଏକାଠି ହୋଇ କାହିଁକି ପରସ୍ପରକୁ ମାରିଦେବା ପାଇଁ ଚେଷ୍ଟା କରନ୍ତି ? ଏପରି ସମାଜ ଅଛି, ଯେପରି ଦକ୍ଷିଣ ସମୁଦ୍ରର କେତେକ ଦ୍ୱୀପରେ ଥିବା ଆରାପେଶଙ୍କର, ଯେଉଁଥିରେ କି ଅଧିକ ସମ୍ପତ୍ତି ଏକାଠି କରିବା ପାଇଁ ଆଗ୍ରହ ନାହିଁ କହିଲେ ଚଳେ । ବାଣ୍ଟି କରି ଖାଇବା ପ୍ରବୃତ୍ତି ଏତେ ବେଶୀ ଯେ, ନିଜର ପେଟ ପୂରା ଖାଇବାକୁ ନ ଥିଲେ ବି ଏହି ଲୋକେ ଅନ୍ୟ ଅଭାବୀ ଲୋକଙ୍କୁ ଭାଗ ଦେବେ । ଏହି ଅଞ୍ଚଳରେ ଏମାନଙ୍କ ପଡ଼ୋଶୀ ଜାତି ମୁଣ୍ଡୁଗୁମୋର, ଯେଉଁମାନଙ୍କର ଆର୍ଥିକ ସ୍ଥିତି ଆରାପେଶ ଲୋକଙ୍କ ସହିତ ସମାନ । ଦୁଇଟି ଯାକ ଜାତି ଖାଇବା ପାଇଁ ଚାଷ ଓ ଜଙ୍ଗଲ ଉପରେ ନିର୍ଭର କରନ୍ତି । କିନ୍ତୁ ମୁଣ୍ଡୁଗୁମୋର ଲୋକଙ୍କ ମଧ୍ୟରେ ସର୍ବଦା କଳହ ଲାଗିରହିଥାଏ । ପଡ଼ୋଶୀଙ୍କ ମଧ୍ୟରେ ପରସ୍ପର ଅବିଶ୍ୱାସର ସୀମା ନାହିଁ । ବାଣ୍ଟି କରି ଖାଇବା ମନୋବୃତ୍ତି ନାହିଁ କହିଲେ ଚଳେ ।

ସମାଜ ବିଜ୍ଞାନ, ନୃତତ୍ତ୍ୱ ତଥା ମନୋବିଜ୍ଞାନର ଅନେକ ଅଧ୍ୟୟନ ଓ ପ୍ରୟୋଗ ପରେ ଅଧିକାଂଶ ବୈଜ୍ଞାନିକ ଏହି ନିଷ୍କର୍ଷରେ ପହଞ୍ଚିଛନ୍ତି ଯେ ହିଂସାର କାରଣ ମୁଖ୍ୟତଃ ସାମାଜିକ ସଂସ୍କାରରେ ରହିଛି । ଯେଉଁ ସମାଜରେ ଯେଉଁ ପ୍ରକାରର ମୂଲ୍ୟବୋଧ ସ୍ୱୀକୃତ ହୋଇଥାଏ, ସେହି ପ୍ରକାରର ସଂସ୍କାର ସେହି ସମାଜର ଲୋକଙ୍କୁ ପିଲାଦିନୁ ମିଳିଥାଏ । ଏଣୁ ଲୋକଙ୍କର ଆଚରଣ ସେହିପରି ହୁଏ । ହିନ୍ଦୁ ସମାଜ ଜାତିଭେଦ, ଉଚ୍ଚନୀଚ ଭେଦଭାବ ଓ ଏପରି କି ଛୁଆଁ ଅଛୁଆଁ ଭେଦଭାବ ଭଳି ଭ୍ରାନ୍ତ ଓ ଅମାନବିକ ମୂଲ୍ୟବୋଧ ସବୁକୁ ଗ୍ରହଣ କରିଛି । ଏଭଳି ଭେଦଭାବ ଗ୍ରସ୍ତ ସମାଜରେ ପ୍ରତ୍ୟେକ ଜାତିର ଇଜ୍ଜତ ମହତ ବା ଗାରିମା ଏଇଥିରେ ଥାଏ ଯେ ଜାତି ଭେଦର ସିଡ଼ିରେ ଅନ୍ୟ ଏକ ଜାତି ତାଙ୍କ ତଳ ପାହାଚରେ ରହିଛି । ଏପରି ସମାଜରେ ଯେତେବେଳେ ସମାନତାର ହାଓ୍ୱା ବହେ ଓ ନୀଚ ବୋଲାଉଥିବା ଜାତିମାନେ ଅନ୍ୟମାନଙ୍କଠାରୁ ସମାନ ଅଧିକାର ଦାବୀ କରନ୍ତି ସେତେବେଳେ ଉଚ୍ଚ ବୋଲାଉଥିବା ଜାତିମାନଙ୍କୁ ଲାଗେ ଯେ ଏହାଦ୍ୱାରା ସେମାନ-ଙ୍କର ଗାରିମା ନଷ୍ଟ ହୋଇଯିବ । ସେମାନଙ୍କ ତଳେ ଯଦି କେହି ନରହିଲେ ତେବେ

ସେମାନଙ୍କର ଅଁନ୍ତ ଇଜ୍ଜତ ମହତ ରହିଲା କୋଉଠି ? ତେଣୁ ଏଭଳି ପରିସ୍ଥିତିରେ ଉଚ୍ଚ ଜାତିମାନେ ହିଂସାର ଆଶ୍ରୟ ନେଇ ତଥାକଥିତ ନୀଚ ଜାତିଙ୍କୁ ଦବେଇ ରଖିବାକୁ ଚାହାନ୍ତି । ପୁଣି ଜାତିଭେଦ ଭିତରେ ଦୁଇଟି ଜାତି ପାଖାପାଖି ପାହାଞ୍ଚ ରେ ଥିବେ ତ କିଏ କାହାଠାରୁ ..ଚ ଏଇ ନେଇ ବିବାଦ ଓ ହାଣକାଟ ବି ହେଇଥାଏ । ବିହାରରେ ଯାଦବ ଓ କୁର୍ମୀଙ୍କ ଭିତରେ ଏଭଳି ଗଣ୍ଡଗୋଳ ହେଉଥିବାର ଦେଖାଯାଏ । ଦୁନିଆରେ ପ୍ରାପ୍ତ ପ୍ରତ୍ୟେକ ଧର୍ମର ଲୋକଙ୍କ ମଧ୍ୟରେ ଏହି ସଂସ୍କାର ରହିଛି ଯେ ଆମର ଧର୍ମ ହିଁ ଦୁନିଆରେ ସର୍ବଶ୍ରେଷ୍ଠ, ବାକୀ ସବୁ ଧର୍ମ ଭୁଲ ବା ନିକୃଷ୍ଟ ଶ୍ରେଣୀର । ଏହା ପଛରେ ଭ୍ରାନ୍ତ ମୂଲ୍ୟବୋଧ ରହିଛି ଓ ତାହା ସାଙ୍ଗକୁ ନିଜର ତଥା ଅନ୍ୟ ଧର୍ମର ପ୍ରକୃତ ସ୍ୱରୂପ ବିଷୟରେ ଅଜ୍ଞତା ମଧ୍ୟ ରହିଛି ।

କେତେକ ସମାଜରେ ତଥା ପରିବାରରେ ମଧ୍ୟ ଏହି ମୂଲ୍ୟବୋଧ ମାନିନିଆ ଯାଇଛି ଯେ, ମୋ ଦେହରେ ଅଧିକ ବଳ ଅଛି ତ, ମୁଁ ମୋଠାରୁ ଦୁର୍ବଳ ବ୍ୟକ୍ତିକୁ ସାହାଯ୍ୟ କରିବି । ମୋର ବୁଦ୍ଧି ଓ ଜ୍ଞାନ ଅଧିକ ଅଛି ତ, କମ ବୁଦ୍ଧି ବା ଜ୍ଞାନ ଥିବା ଲୋକକୁ ସାହାଯ୍ୟ କରିବି । ସାରା ଭାରତର ସମଗ୍ର ଗ୍ରାମ ଗୁଡ଼ିକରେ ଏହି ପ୍ରକାରର ସଂସ୍କୃତି ଦେଖିବାକୁ ମିଳିବ । କିନ୍ତୁ ରାବଣ, ଦୁର୍ଯୋଧନ, ବାବର ବା ଓ୍ୱାରେନ୍ ହେଷ୍ଟିଙ୍ଗସ୍ ତଥା କ୍ଲାଇଭଙ୍କ ପରି ଲୋକଙ୍କ ଦ୍ୱାରା ଚଳା ଯାଇଥିବା ଅନ୍ୟ ସଂସ୍କୃତି ହେଲା ଯେ, ନିଜ ଠାରେ ବଳ, ବୁଦ୍ଧି ବା ଜ୍ଞାନ ଅଧିକ ଅଛି ତ ଦୁର୍ବଳ, ଅଳ୍ପ ବୁଦ୍ଧି ତଥା ଜ୍ଞାନହୀନ ମାନଙ୍କୁ ଲୁଟିବା, ଦବାଇ ରଖିବା ଆଦି ପାଇଁ ତାହାର ଉପଯୋଗ କରିବା ।

## ଆଧୁନିକ ସଭ୍ୟତା ଓ ହିଂସା

ଏହି ରାବଣ, ବାବର ବା କ୍ଲାଇଭଙ୍କର ସଂସ୍କୃତି ଆଜି ଦୁନିଆରେ ପ୍ରବଳ ହୋଇଛି । ଏହା ଫଳରେ ହେଲା ଯେ ଏକ ପକ୍ଷରେ ସାମ୍ରାଜ୍ୟବାଦ ଓ ବହୁରାଷ୍ଟ୍ରୀୟ କମ୍ପାନୀ ମାନେ ଗରିବ ଦେଶ ତଥା ସେସବୁ ଦେଶରେ ଗରିବ ଲୋକଙ୍କର ଶୋଷଣ ଓ ଦମନରେ ଲାଗିଛନ୍ତି ଓ ଅନ୍ୟ ପକ୍ଷରେ ଆତ୍ମରକ୍ଷା ପାଇଁ ହିଂସାର ଆଶ୍ରୟ ନିଆ ଯାଉଛି । ଆଧୁନିକ ସଭ୍ୟତାର ପ୍ରଭାବରେ ଏହି ହିଂସା ବିବେକହୀନ ହୋଇପଡ଼ୁଛି । ଗାନ୍ଧୀଜୀ ଆତ୍ମରକ୍ଷା ପାଇଁ ଅହିଂସକ ଉପାୟ ଜଣା ନଥିଲେ ହିଂସାତ୍ମକ ପ୍ରତିକାରକୁ ଯଥାର୍ଥ ବୋଲି କହିଛନ୍ତି । ସେ ଏହା କହିଥିଲେ ଯେ କାପୁରୁଷତା ଠାରୁ ହିଂସା ଶ୍ରେୟସ୍କର । ଗୋଟିଏ ଶକ୍ତିଶାଳୀ ଦେଶ ଅନ୍ୟ ଦୁର୍ବଳ ଦେଶ ଉପରେ ଚଢ଼ଉ କଲେ ଏବଂ ସେଇ ଦୁର୍ବଳ ଦେଶ ନିଜକୁ ବଞ୍ଚାଇବା ପାଇଁ ସଶସ୍ତ୍ର ପ୍ରତିରୋଧ କଲେ, ତାହା ଯଥାର୍ଥ ବୋଲି ଗାନ୍ଧୀଜୀ କହିଛନ୍ତି । କିନ୍ତୁ ଯୁଦ୍ଧର ଯେଉଁ ଦୁଷ୍ପରିଣାମ ତାହା ଯେ କୌଣସି ପ୍ରକାରର ଯୁଦ୍ଧରେ ହେବହିଁ ହେବ । ଏଥିପାଇଁ ସେ ଆତ୍ମରକ୍ଷା ଓ ଦେଶରକ୍ଷା ପାଇଁ ଅହିଂସକ ଉପାୟ ଖୋଜିଲେ ।

ଆମ ପିଲାଦିନେ, ଷାଠିଏ ସତୁରି ବର୍ଷ ତଳେ, ଭାରତର ସ୍ୱାଧୀନତା ପାଇଁ ହିଂସାର ମାର୍ଗରେ ଲଢ଼ିଲାବାଲା ହିଂସାବାଦୀମାନେ ଇଂରେଜମାନଙ୍କୁ ହତ୍ୟା କରୁଥିଲେ, କିନ୍ତୁ ଯେ କୌଣସି ଇଂରେଜ ପୁରୁଷ, ସ୍ତ୍ରୀ ବା ପିଲାଙ୍କୁ ନୁହେଁ । କଲିକତାରେ ସେତେବେଳେ ଶହଶହ ଇଂରେଜ ରାସ୍ତାରେ ବୁଲାଚଲା କରୁଥିଲେ । ଏମାନଙ୍କ ପାଇଁ ଆଜିକା ପରି ସୁରକ୍ଷାର ବ୍ୟବସ୍ଥା ନ ଥିଲା । କିନ୍ତୁ ହିଂସାବାଦୀମାନେ କେବଳ ଖାସ ଅତ୍ୟାଚାରୀ ଇଂରେଜ ହାକିମଙ୍କୁ ହିଁ ମାରିବାକୁ ଚେଷ୍ଟା କରୁଥିଲେ । ନିର୍ଦ୍ଦୋଷ ଇଂରେଜଙ୍କ ଉପରେ ଆକ୍ରମଣ କରୁନଥିଲେ । କିନ୍ତୁ ଆଜିକାଲି ବସ୍ ବା ଟ୍ରେନ୍‌ରୁ ଓହ୍ଲାଇ ଆଣି ଯେ କୌଣସି ଲୋକଙ୍କୁ ମାରିଦେବା ପଞ୍ଜାବ ଆଦିରେ ଗୋଟିଏ ସାଧାରଣ ଘଟଣା ହୋଇଗଲାଣି । ହିଂସା କରିବାରେ ମଧ୍ୟ ଯେଉଁ ଅଳ୍ପ ବହୁତ ବିବେକ ଆଗକାଳରେ ଥିଲା ତାହା ଆଜି ଲୋପ ପାଇ ଯାଉଛି । ଏଥିରେ କେବଳ ବିବେକହୀନତା ନୁହେଁ, ହୃଦୟହୀନତା ମଧ୍ୟ ରହିଛି । ଏହି ହୃଦୟହୀନତା ଚାରିଆଡ଼େ ଦେଖିବାକୁ ମିଳୁଛି । ଡାକ୍ତରଖାନାରେ ଡାକ୍ତର ବା କର୍ମଚାରୀ ଧର୍ମଘଟ କରୁଛନ୍ତି ତ ମୁମୂର୍ଷୁ ଅବସ୍ଥାରେ ପଡ଼ିଥିବା ରୋଗୀଙ୍କ ପାଇଁ ଏମାନଙ୍କର ଟିକିଏ ବି ଚିନ୍ତା ଥିବାର ଦେଖିବାକୁ ମିଳୁନାହିଁ । ଦୁର୍ଭିକ୍ଷପ୍ରପୀଡ଼ିତ ଭୋକିଲା ଲୋକଙ୍କ ସାହାଯ୍ୟ ପାଇଁ ଯେଉଁ ଖାଦ୍ୟ ଆସୁଛି ତାହାକୁ ଆତ୍ମସାତ କରିବାରେ ସରକାରୀ କର୍ମଚାରୀ ତଥା ସରପଞ୍ଚ ଆଦିଙ୍କର ତିଳେମାତ୍ର ସଂକୋଚ ହେଉନାହିଁ । ବିଦ୍ୟାଳୟ ଗୁଡ଼ିକରେ ଛୋଟପିଲାଙ୍କ ପାଇଁ ମିଳୁଥିବା ଗୁଣ୍ଡଦୁଧ ଓ ବଲଗାର ଆଦି ଖାଦ୍ୟର ଚୋରି ସାଧାରଣ କଥା ହୋଇଗଲାଣି । ମନେହେଉଛି ଯେ ପୁଞ୍ଜିବାଦୀ ଆଧୁନିକ ସଭ୍ୟତା ମୂଳରେ ଯେଉଁ ସ୍ୱାର୍ଥପରତାକୁ ଏକ ମହତ୍ତ୍ୱପୂର୍ଣ୍ଣ ମୂଲ୍ୟବୋଧ ବୋଲି ମାନିନିଆ ଯାଇଛି ତାହାର ପ୍ରାଦୁର୍ଭାବ ଏତେ ବଢ଼ି ଯାଇଛି ଯେ ଅନ୍ୟପାଇଁ ସହାନୁଭୂତି ବା ଚିନ୍ତା ପ୍ରାୟ ଶୂନ୍ୟ ହୋଇ ଗଲାଣି । ଏହାର ପରୀକ୍ଷା ନିରୀକ୍ଷା କରିଥିବା ବୈଜ୍ଞାନିକମାନଙ୍କ ମତ ଯେ, ଆଧୁନିକ ସଭ୍ୟତାରେ ଅନ୍ୟକୁ ନିଜର ଉଦ୍ଦେଶ୍ୟ ସିଦ୍ଧିର ଉପକରଣ ବୋଲି ମନେ କରାଯାଏ । ସୁଖଦୁଃଖ ଅନୁଭବ କରିବାର ଶକ୍ତି, ଜୀବନ, ଏମାନଙ୍କର ଅଛି ବୋଲି ଅନୁଭବ କରାଯାଏ ନାହିଁ । ଲୁହା, କୋଇଲା, ବିଜୁଳି ଆଦିପରି ଶ୍ରମିକ ବି ଏକ ଉପକରଣ । ସାଧାରଣ ଲୋକ, ନିଜ କାରଖାନାର ମାଲ କିଣିବା ବାଲା ମଧ୍ୟ ଏହିପରି ଉପଯୋଗୀ ଜୀବ, ବାସ୍ । ଏଇ ପ୍ରକାରର ଏକ ମନୋବୃତ୍ତି ବ୍ୟାପୁଛି । ଏଥିରେ କାହାରି ଜୀବନ ନେବାରେ ମନରେ କୌଣସି ପ୍ରକାରର ଚିନ୍ତା ବା ଗ୍ଲାନି ସୃଷ୍ଟି ହୁଏ ନାହିଁ । ଏହି ମନୋବୃତ୍ତି ବା ବିକୃତି ବା ମାନସିକ ବ୍ୟାଧି ଯେ କେତେଦୂର ବ୍ୟାପିଲାଣି ତାହା ନିଜର ଆଖପାଖରେ ଦୃଷ୍ଟି ପକାଇଲେ ଆମେ ଦେଖିବାକୁ ପାଇବା । ଏହା ଏକ ଭୟଙ୍କର ସାଂସ୍କୃତିକ ଅବକ୍ଷୟ ଯାହା ଯୋଗୁଁ ମାନବ ସମାଜରେ ଜଙ୍ଗଲର ଆଇନ ବ୍ୟାପି ଯାଉଛି । ପରମାଣୁ

ବୋମା ଏହି ମନୋବୃତ୍ତିର ପରାକାଷ୍ଠା । ନିଜର ସ୍ୱାର୍ଥସିଦ୍ଧି ପାଇଁ ଲକ୍ଷ ଲକ୍ଷ କୋଟି କୋଟି ଲୋକଙ୍କୁ ମୃତ୍ୟୁମୁଖରେ ମାରି ଦେବା କଥା ଚିନ୍ତା କରିବାବେଳେ ରାଷ୍ଟ୍ରନେତା ବା ଏ ବୋମାର ଆବିଷ୍କର୍ତ୍ତା ବୈଜ୍ଞାନିକ ବା ଏହାକୁ ଖଞ୍ଜୁଥିବା ଇଞ୍ଜିନିୟର ଆଦିଙ୍କର ଟିକିଏ ହେଲେ ବି ଚିନ୍ତା କି ସଙ୍କୋଚ ହେଉ ନାହିଁ । ମାନବିକତାର ଏହି ଯେଉଁ ବିନାଶ ହୋଇ ଚାଲିଛି ଏହାର ପ୍ରତିରୋଧ କରିବା ପାଇଁ ବହୁତ କିଛି କରିବାକୁ ପଡ଼ିବ ।

ହିଂସାର କେତେକ ପ୍ରକାର ମାନସିକ ବିକୃତିର ପରିଣାମ ବୋଲି ମଧ୍ୟ ମନୋବୈଜ୍ଞାନିକ ଗବେଷଣାରୁ ଜଣାପଡ଼ିଛି । ଏହାର ବିଶଦ ଆଲୋଚନା ପାଇଁ ଏଠାରେ ସ୍ଥାନ ନାହିଁ, କିନ୍ତୁ ଏହା ପ୍ରମାଣିତ ହୋଇଛି ଯେ କାମପ୍ରବୃତ୍ତିର ଏକପ୍ରକାରର ବିକୃତି ଘଟିଥାଏ, ଯାହା ଯୋଗୁଁ ଅନ୍ୟମାନଙ୍କୁ ଯନ୍ତ୍ରଣା ଦେବାରେ ଆନନ୍ଦ ମିଳେ । ଏହି ପ୍ରକାରର ଲୋକେ କ୍ରୂର ହୋଇଥାନ୍ତି । ଅନ୍ୟକୁ ମାରି, ଶାରୀରିକ ତଥା ମାନସିକ ଯନ୍ତ୍ରଣା ଦେଇ ସେଥିରୁ ଆନନ୍ଦ ପାଆନ୍ତି । ସାଧାରଣ ମନୁଷ୍ୟମାନଙ୍କ ମଧ୍ୟରେ ଅନ୍ୟ ଲୋକଙ୍କୁ ହତ୍ୟା କରିବା ପାଇଁ ପ୍ରବୃତ୍ତି ସହଜରେ ଜନ୍ମେ ନାହିଁ । କେହି ଯଦି ରାଗିଯାଇ ଅନ୍ୟକୁ ଆକ୍ରମଣ କରେ, ଏବଂ ହତ୍ୟା କରିବାର ଉଦ୍ଦେଶ୍ୟ ନ ଥିଲେ ମଧ୍ୟ ଅନ୍ୟ ଲୋକଟି ମରିଯାଏ ତେବେ ତାହା ଭିନ୍ନେ କଥା । ପୁଣି ଉପରୋକ୍ତ ବିକୃତିରେ ପୀଡ଼ିତ ବ୍ୟକ୍ତି ଅନେକ ବ୍ୟକ୍ତିଙ୍କୁ ହତ୍ୟା କରିବାରେ ଆନନ୍ଦ ପାଇଥାଏ । କ୍ରୂରତା ଦେଖିବାରେ ତାହାକୁ ଆନନ୍ଦ ମିଳେ । ଏବେ ୧୯୯୦ ମସିହାରେ ଇଂଲଣ୍ଡରେ ପୁଲିସକୁ ଜାଣିବାକୁ ମିଳିଲା ଯେ, କେତେକ ଲୋକ ପାଞ୍ଚଦଶବର୍ଷର ଶିଶୁମାନଙ୍କୁ ଚୋରାଇ ନେଇ ଭି. ଡି. ଓ. କ୍ୟାମେରାର ସାମନାରେ କ୍ରୂରତାର ସହିତ ହତ୍ୟା କରୁଛନ୍ତି, ଏବଂ ଏହାର କ୍ୟାସେଟ୍ ଚୋରାରେ ୟୁରୋପର କେତେକ ଦେଶରେ ତଥା ଆମେରି-କାରେ ହଜାର ହଜାର ସଂଖ୍ୟାରେ ବିକ୍ରି ହେଉଛି । ଏସବୁ ଦେଶମାନଙ୍କରେ ପ୍ରତିଦିନ ଟି. ଭି. ରେ କୋଡ଼ି କୋଡ଼ି ହତ୍ୟାକାଣ୍ଡର ଦୃଶ୍ୟ ଦେଖାଯାଏ । ଏହା ସବୁ ପ୍ରତିଦିନ ଦେଖିଦେଖି ପିଲାଦିନୁଁ ଏହିପରି ମନୋଭାବ ଗଢ଼ିଉଠେ ଯେ ମଣିଷକୁ ହତ୍ୟା କରିବାରେ ମନକୁ ବାଧିବା ପରି କିଛି ନାହିଁ । ପରିବା କାଟିବା ପରି ଏହା ଏକ ସାଧାରଣ କଥା । ଏକଥାରୁ ସ୍ପଷ୍ଟ ହେଉଛି ଯେ ଏହି ଦେଶମାନ-ଙ୍କରେ ଏହିପରି ଏକ ରାକ୍ଷସୀ ମନୋଭାବ ସୃଷ୍ଟି ହେଉଛି । ଏହିସବୁ କାରଣରୁ ବହୁ ଲୋକଙ୍କର ଏପରି ମାନସିକତା ହେଇଗଲଣି ଯେ, ସେମାନେ ଆଉ ହତ୍ୟାକାଣ୍ଡର ଅଭିନୟ ଦେଖି ସନ୍ତୁଷ୍ଟ ହେଉ ନାହାନ୍ତି, ସେମାନେ ପ୍ରକୃତ ହତ୍ୟାର ଦୃଶ୍ୟ ଦେଖି-ବାକୁ ଚାହାନ୍ତି । ଆଗରୁ ଯାହା କୁହାଯାଇଛି ଯେ ମଣିଷକୁ ମଣିଷ ବୋଲି ମନେ ନ କରି ପଦାର୍ଥ ବୋଲି ମନେକରିବାର ଯେଉଁ ପ୍ରବୃତ୍ତି ପୁଞ୍ଜିବାଦୀ ସଭ୍ୟତାର ମୂଳରେ ଅଛି, ତାହାକୁ ଏହି ଟି. ଭି. ର ପ୍ରଚାର ପୁଷ୍ଟ କରୁଛି । ଆତଙ୍କବାଦୀ

ଉପଦ୍ରବଗ୍ରସ୍ତ ପଞ୍ଜାବରେ ପ୍ରତିବର୍ଷ ଲକ୍ଷେ ଲୋକସଂଖ୍ୟାପିଚ୍ଛା ଯେତିକି ହତ୍ୟାକାଣ୍ଡ ହୋଇଥାଏ ସୁସଭ୍ୟ ନ୍ୟୁୟର୍କ ତଥା ଓ୍ୱାସିଂଟନ୍ ନଗରରେ ବର୍ଷକୁ ଏକଲକ୍ଷ ଜନସଂଖ୍ୟା ପିଚ୍ଛା ଘଟୁଥିବା ହତ୍ୟାର ଅନୁପାତ ତାହାଠାରୁ ବିଶେଷ କମ ନୁହେଁ ।

ଏହାର ଓଲଟା ଏକ ବିଲକ୍ଷଣ ତଥ୍ୟ ଜାଣିବାକୁ ମିଳିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଯେଉଁ ଆମେରିକୀୟ ସୈନିକମାନେ ଲଢ଼ୁଥିଲେ ସେମାନଙ୍କର କାର୍ଯ୍ୟଦକ୍ଷତା ଉପରେ ଯାଞ୍ଚ କରାଯାଇ ଜଣାପଡ଼ିଲା ଯେ, ଯୁଦ୍ଧ ସମୟରେ ଯେତେବେଳେ 'ଗୁଳିଚଳାଅ' ବୋଲି ହୁକୁମ ଦିଆଯାଏ, ସେତେବେଳେ ଶତକରୁ କେବଳ ପନ୍ଦରଜଣ ସିପାହୀ ରାଇଫଲ୍‌ର ଘୋଡ଼ା ଟିପୁଥିଲେ । ବାକି ସମସ୍ତେ ମଣିଷ ମାରିବାକୁ ଚାହୁଁ ନ ଥିଲେ । ଅତି ସଙ୍କଟ ସମୟରେ ବେଶୀହେଲେ ଶତକଡ଼ା ପଚିଶ ଗୁଳି ଚଳଉଥିଲେ । ସିପାହୀମାନଙ୍କୁ ବିଶେଷ ପ୍ରଶିକ୍ଷଣ ଦିଆଯିବା ପରେ କୋରିଆ ଯୁଦ୍ଧରେ ଦେଖିବାକୁ ମିଳିଲା ଯେ ଏବେ ହୁକୁମ ମିଳିବା ପରେ ପଚାଶ ପ୍ରତିଶତ ଗୁଳି ଚଳାଇଲେ । ଏହାସବୁ ଜାଣିବା ପରେ ଲାଗୁଛି ଯେ ହିଂସାତ୍ମକ ଆଚରଣର ସବୁ କାରଣ ଏବେ ବି ଜାଣିବାକୁ ବାକି ଅଛି, ତଥାପି ଏକଥା ସ୍ପଷ୍ଟ ଯେ ଅଧିକାଂଶ ପ୍ରକାରର ହିଂସାତ୍ମକ ଆଚରଣ ମଣିଷ ପାଇଁ ସ୍ୱାଭାବିକ ନୁହେଁ । ଏହା ହୁଏତ ସଂସ୍କୃତିଜନିତ କିମ୍ବା ମାନସିକ ବିକୃତିଜନିତ ହୋଇପାରେ । କୌଣସି ସମାଜର ସଂସ୍କୃତି ଭୁଲ ମୂଲ୍ୟବୋଧ ଯୋଗୁଁ ବିକୃତ ହୋଇଯାଇଥିଲେ ଦୁଇଟିଯାକ କାରଣର ମେଳ ହୋଇଥାଏ । ବିକୃତ ସାମାଜିକ ସଂସ୍କୃତିରୁ ବ୍ୟକ୍ତିର ବିକୃତ ମନୋଭାବ ଜନ୍ମ ନିଏ । ଏପରି ହିଂସାର ନିର୍ମୂଳନ ପାଇଁ ସମାଜକୁ ସୁସ୍ଥ କରିବାକୁ ପଡ଼ିବ । ଏହାର ବିକୃତିଗୁଡ଼ିକୁ ଲୋପ କରିବାକୁ ପଡ଼ିବ ।

କେତେ ପ୍ରକାରର ହିଂସାତ୍ମକ ଆଚରଣକୁ ସୁସ୍ଥବୋଲି ଧରିନିଆଯାଇ ପାରେ । ଯେପରି ନିଜର କିମ୍ବା ଅନ୍ୟର ସୁରକ୍ଷା ପାଇଁ, ଦେଶର ସ୍ୱାଧୀନତା ବା ସାମାଜିକ ଆନ୍ଦୋଳନ ପାଇଁ କରାଯାଇଥିବା ଓ ଅନ୍ୟାୟର ମୁକାବିଲା କରିବା ପାଇଁ, କରାଯାଇଥିବା ହିଂସାତ୍ମକ ଆଚରଣ । ଏଗୁଡ଼ିକର ଅହିଂସ ବିକଳ୍ପ ବାହାରକରିବା ଦ୍ୱାରହିଁ ଏହି ପ୍ରକାରର ହିଂସାକୁ ଲୋପକରି ହେବ । ଅବଶ୍ୟ ଏହା ମଧ୍ୟ ମନେରଖିବା ଉଚିତ ହେ ନ୍ୟାୟସଙ୍ଗତ ବୋଲି ମନେକରାଯାଉଥିବା ହିଂସା ମଧ୍ୟ ଭୟଙ୍କର ଓ ବିକୃତ ରୂପ ଧାରଣ କରିଥାଏ ।

## ହିଂସା ମୁକ୍ତିର ଉପାୟ

ତେଣୁ ହିଂସା ଯେ ବିଭିନ୍ନପ୍ରକାର ରହିଛି ତାହା ଦୃଷ୍ଟିରେ ରଖି ଏଥିରୁ ମୁକ୍ତି ପାଇଁ ଆମକୁ ଭିନ୍ନ ଭିନ୍ନ ଉପାୟରେ ଏହାର ସମ୍ମୁଖୀନ ହେବାକୁ ପଡ଼ିବ ।

ସମାଜର ରଚନାରେ ଯେଉଁ ହିଂସା ନିହିତ ଅଛି ତାହାକୁ ଲୋପ କରିଦେବା ପାଇଁ ସମାଜରେ ଯେଉଁସବୁ ଭ୍ରାନ୍ତ ମୂଲ୍ୟବୋଧକୁ ମାନି ନିଆଯାଇଛି ସେସବୁକୁ ହଟେଇ ଯଥାର୍ଥ ମୂଲ୍ୟବୋଧ ଦାଖଲ କରିବାକୁ ହେବ, ଏହିସବୁ ଭ୍ରାନ୍ତ ମୂଲ୍ୟବୋଧ ଭିତରେ ପ୍ରଧାନ ହେଲା ହିନ୍ଦୁମାନଙ୍କ ମଧ୍ୟରେ ଜାତିଭେଦ ତଥା ଛୁଆଁ ଅଛୁଆଁ ଭାବ; ସବୁ ଧର୍ମରେ ଅନ୍ୟଧର୍ମ ପାଇଁ ଅନାଦର, ସ୍ତ୍ରୀମାନଙ୍କ ଉପରେ ପୁରୁଷଙ୍କର ପ୍ରାଧାନ୍ୟ ତଥା ଏହି ଧାରଣା ଯେ ଯାହା ପାଖରେ ସାମାଜିକ ପ୍ରତିଷ୍ଠା ବା ଧନ ଅଛି, ତାହା ପ୍ରତି ସମାଜର କୌଣସି ନିୟମ ଲାଗୁ ହେବ ନାହିଁ ।

ସାମାଜିକ ପରିବର୍ତ୍ତନ ନିଜର ବିଚାର ଓ ଆଚରଣଠାରୁ ଆରମ୍ଭ କରିବାକୁ ପଡ଼ିବ । ସମାଜକୁ ପ୍ରଭାବିତ କରିବାର ନୈତିକ ବଳ ସେଇଥିରୁ ମିଳିବ ।

## ବ୍ୟବସ୍ଥାରେ ନିହିତ ହିଂସା

ଆର୍ଥିକ ତଥା ରାଜନୈତିକ ବ୍ୟବସ୍ଥାରେ ନିହିତ ହିଂସାର ନିରାକରଣ ପାଇଁ ଏସବୁ ଆମୂଳଚୂଳ ବଦଳାଇବାକୁ ହେବ । ଏହା ପାଇଁ ଗ୍ରାମସ୍ୱରାଜ୍ୟ ଆନ୍ଦୋଳନ ଆରମ୍ଭ କରାଯାଇଅଛି । ବିକେନ୍ଦ୍ରୀକରଣ, ସ୍ୱଦେଶୀ ଓ ସ୍ୱାବଲମ୍ବନ ଏହାର ମୂଳ ସୂତ୍ର । ଏବେ ପୁରୁଣା ଶୋଷଣମୂଳକ ବ୍ୟବସ୍ଥାର ନୂତନ ବିଭାବ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକୁ ଏ ଦେଶକୁ ଆସିବାକୁ ଆମନ୍ତ୍ରଣ ଦେବା ରୂପରେ ପ୍ରକାଶ ପାଇଛି । ଏମାନଙ୍କ ଦ୍ୱାରା ତିଆରି ଦ୍ରବ୍ୟ ଗୁଡ଼ିକର ବର୍ଜନ ଏବେ ଗ୍ରାମସ୍ୱରାଜ୍ୟ ଆନ୍ଦୋଳନର ଅପରିହାର୍ଯ୍ୟ ଅଙ୍ଗ ହୋଇଯାଇଛି । ନୂଆ ରାଜନୈତିକ ବ୍ୟବସ୍ଥାର ପ୍ରବର୍ତ୍ତନ ପାଇଁ ରାଜନୀତିକ କ୍ଷେତ୍ରରେ ବୈପ୍ଳବିକ ଶକ୍ତି ରୂପେ ମତଦାତା ପରିଷଦ ଓ ଲୋକପ୍ରାର୍ଥୀର କାର୍ଯ୍ୟକ୍ରମ ରଖାଯାଇଛି । ଏହି ସମସ୍ତ କାର୍ଯ୍ୟକ୍ରମଗୁଡ଼ିକକୁ ଖୁବ୍ ବେଗରେ ଆଗେଇ ନେବା ଆବଶ୍ୟକ । ବୈକଳ୍ପିକ ବ୍ୟବସ୍ଥାର ମୂଳଦୁଆ ପକାଇବା ପାଇଁ ସ୍ୱତନ୍ତ୍ର ବା ମୁକ୍ତ କ୍ଷେତ୍ର ସବୁ ଗଢ଼ି-ତୋଳିବା ଆବଶ୍ୟକ । ଏସବୁର ଆଲୋଚନା ଅନ୍ୟତ୍ର ବିସ୍ତାରିତ ଭାବେ ହୋଇଛି । ଏଠାରେ ଅଧିକ କହିବାର ଆବଶ୍ୟକତା ନାହିଁ ।

## ପିଲାମାନଙ୍କ ପ୍ରତି ବ୍ୟବହାର

ବିକୃତ ସଂସ୍କୃତିର କେତେକ ପ୍ରକାରର ଚର୍ଚ୍ଚା ତ ସମାଜ ରଚନାରେ ନିହିତ ହିଂସାର ପରିପ୍ରେକ୍ଷୀରେ କରାଯାଇଛି । ଏହାର ଗୋଟିଏ ଓ ମୋ ଦୃଷ୍ଟିରେ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ପିଲାଙ୍କ ସାଙ୍ଗରେ ଅଭିଭାବକଙ୍କର ତଥା ଅନ୍ୟ ବଡ଼ ମଣିଷଙ୍କ ବ୍ୟବହାର । ପିଲାମାନଙ୍କୁ ମାରପିଟ୍ କରିବା ଓ ଦବାଇ-ଦେବା ଆମ ଦେଶରେ ସର୍ବତ୍ର ଖୁବ୍ ଦରକାର ବୋଲି ମନେକରାଯାଏ । ଏହା ବିନା ପିଲାଏ ଶୃଙ୍ଖଳିତ ହେବେ ନାହିଁ ବୋଲି ମନେକରାଯାଏ । ଏହାର

ପ୍ରଶଂସନୀୟ ବ୍ୟତିକ୍ରମ ହେଲା କେତେକ ଆଦିବାସୀ ସମାଜ, ଯେଉଁଥିରେ ଲୋକେ ପିଲାମାନଙ୍କ ସହିତ ଯେପରି ବ୍ୟବହାର କରନ୍ତି ତାହା ସଭ୍ୟ ବୋଲାଉଥିବା ସମାଜ ସବୁର ବ୍ୟବହାର ଅପେକ୍ଷା ବହୁ ଗୁଣରେ ଅଧିକ ସଭ୍ୟ ।

ମାଡ଼ ଦ୍ୱାରା ପିଲାଙ୍କୁ ଦବାଇବା ଏକ ଅତ୍ୟନ୍ତ ଭୁଲ ପନ୍ଥା । ଏହା ଅନେକ ପ୍ରକାରର ହିଂସାର ମୂଳ । ଯେ ବଡ଼ ବା ବଳୁଆ ସେ ଶ୍ରେଷ୍ଠ ତଥା ଦୁର୍ବଳଙ୍କୁ ମାଡ଼ଦେଇ ଦବେଇ ରଖିବା ଯଥାର୍ଥ ଏହି ଧାରଣା ଏଇଥିଯୋଗୁଁ ସମାଜରେ ସର୍ବବ୍ୟାପୀ ଓ ବଦ୍ଧମୂଳ ହୋଇଯାଇଛି ।

ବହୁତ ଲୋକଙ୍କ ସହ ଆଲୋଚନା କରି ମୁଁ ଦେଖିଛି ଯେ, ପିଲାଙ୍କୁ ମାଡ଼ ନ ଦେଇ ସମ୍ଭାଳି ହୋଇପାରେ ଏପରି ବିଶ୍ୱାସ ଅନେକ ଲୋକଙ୍କର ନାହିଁ । ଏହା ନିଜର ଅଜ୍ଞାନର ପରିଚାୟକ । ଗଲା ପଚାଶ ଷାଠିଏ ବର୍ଷ ହେଲା ଦୁନିଆରେ ବିନା ପାଟି ତୁଣ୍ଡରେ ଏକ ବିପ୍ଳବ ହୋଇ ଚାଲିଛି ଯାହାକୁ ବୈଜ୍ଞାନିକ ଚିନ୍ତକମାନେ ପିଲାଙ୍କର ବିପ୍ଳବ ବୋଲି କହୁଛନ୍ତି । ପିଲାଙ୍କ ବିଷୟରେ, ଶିକ୍ଷାର ପ୍ରକ୍ରିୟା ବିଷୟରେ ଯେଉଁ ସମସ୍ତ ଗବେଷଣା ସତୁରି ବା ଅଶୀ ବର୍ଷ ମଧ୍ୟରେ ହୋଇଛି, ସେଥିରୁ ଯେଉଁ ନୂଆ ଜ୍ଞାନ ମିଳିଛି, ଏବଂ ମିଳୁଛି ତାହାର ଏହି ପରିଣାମ ହୋଇଛି ଯେ ଲକ୍ଷ ଲକ୍ଷ ଅଭିଭାବକ ପିଲାଙ୍କୁ ମାରପିଟ କରିବା, ସେମାନଙ୍କୁ ଲାଞ୍ଛିତ କରିବା ଏବଂ ଅପମାନିତ କରି ଚପେଇ ରଖିବା ପନ୍ଥା ଛାଡ଼ି ଦେଇଛନ୍ତି । ପିଲାଙ୍କର ଯଥୋଚିତ ଲାଳନପାଳନରେ ସ୍ନେହ ଓ ଜ୍ଞାନର ମହତ୍ତ୍ୱ ଖୁବ୍ ସ୍ପଷ୍ଟ ହୋଇଯାଇଛି । ଅଭିଭାବକଙ୍କର ନିଜର ପିଲାଙ୍କ ପ୍ରତି ପ୍ରେମ ଥାଏ, କିନ୍ତୁ ଜ୍ଞାନର ଅଭାବ ଯୋଗୁଁ ଏହି ପ୍ରେମ ଅନ୍ଧ ହୋଇଯାଏ । ଏବେ ବିଜ୍ଞାନ ଜ୍ଞାନର ଏହି ଅଭାବକୁ ପୂରଣ କରିବା ଆରମ୍ଭ କରିଛି । ଏହାଦ୍ୱାରା ଦୁନିଆର ସବୁଠାରୁ ବଡ଼ ହିଂସା ଲୋପ ପାଇବା ଆରମ୍ଭ ହୋଇଛି । ବିଶ୍ୱଶାନ୍ତି ଦିଗରେ ଏହା ଗୋଟିଏ ବଡ଼ ପଦକ୍ଷେପ ।

ତେଣୁ ଆପଣା ପିଲାମାନଙ୍କ ପ୍ରତି ହିଂସାତ୍ମକ ଆଚରଣ ଛାଡ଼ିଦେବା ଆମର କର୍ତ୍ତବ୍ୟ । ସେମାନଙ୍କୁ ଦବେଇବା ନାହିଁ, ସାନରୁ ସାନ ପିଲା ମଧ୍ୟ ଜଣେ ବ୍ୟକ୍ତି । ଏହା ମନରେ ରଖି ପିଲାମାନଙ୍କୁ ନିଜ ସହିତ ସମାନ ବୋଲି ଭାବିବା ଉଚିତ, ତା'ର ବ୍ୟକ୍ତିତ୍ୱ ପ୍ରତି ଆଦର ଓ ସମ୍ମାନର ଭାବ ରଖିବା ଉଚିତ । ଏହି ବିଷୟରେ ମିଳୁଥିବା ସାହିତ୍ୟର ଅଧ୍ୟୟନ କରି ଆମର ଏହି ବିଷୟରେ ଜ୍ଞାନ ବଢ଼ାଇବା ଆବଶ୍ୟକ । ଏକଥା ମନେରଖିବା ଉଚିତ ଯେ, ଗାନ୍ଧୀଜୀଙ୍କର ମୌଳିକଶିକ୍ଷାର କାର୍ଯ୍ୟକ୍ରମର ମୂଳରେ ଶିକ୍ଷାକୁ ହିଂସାରୁ ମୁକ୍ତ ରଖିବା ହିଁ ସର୍ବପ୍ରଧାନ ଲକ୍ଷ୍ୟ ଥିଲା ।

# ଅତ୍ୟଧିକ ସ୍ୱାର୍ଥପରତା

ହିଂସାର ଅସ୍ତ୍ରିତ୍ୱକ ମୂଳ ଭିତରେ ଗୁରୁତ୍ୱ ଦୃଷ୍ଟିରୁ ଦ୍ୱିତୀୟସ୍ଥାନରେ ଆସୁଛି ଅତିମାତ୍ରାରେ ସ୍ୱାର୍ଥପରତା । ପୁଞ୍ଜିବାଦୀ ସଭ୍ୟତାର ମୂଳରେ କିପରି ଭାବରେ ଏହା ଓତଃପ୍ରୋତ ହୋଇ ରହିଛି ଏହାର ଆଲୋଚନା ପୂର୍ବରୁ କରାଯାଇଛି । ଏହା ମଧ୍ୟ ଆର୍ଥିକରଚନାରେ ହିଂସା ପ୍ରସଙ୍ଗରେ ଆଲୋଚନା କରାଯାଇ ପାରିଥାଆନ୍ତା । ଗୋଟିଏ କଥା ମନେରଖିବା ଦରକାର ଯେ ସ୍ୱାର୍ଥପର ଓ ଭୋଗବିଳାସ ପ୍ରିୟ ଲୋକ-ମାନଙ୍କ ଭିତରେ ମଧ୍ୟ ଅନ୍ୟ ପାଇଁ ଚିନ୍ତା କରୁଥିବା ଲୋକେ ମିଳିବେ । ଭଲ ଭୋଜିଭାତ ସମୟରେ ଅନ୍ୟମାନଙ୍କୁ ନ ଡାକି ଏକୁଟିଆ ଖାଇବାରେ ସେମାନଙ୍କୁ ତୃପ୍ତି ମିଳେନାହିଁ । କିନ୍ତୁ ପୁଞ୍ଜିବାଦୀ ସ୍ୱାର୍ଥପରତାରେ ଅନ୍ୟପ୍ରତି ବେଖାତିର ଏବଂ ଅନ୍ୟମାନଙ୍କ ବିଷୟରେ ଚିନ୍ତାର ଅଭାବ ହିଁ ମୁଖ୍ୟ କଥା ହୋଇଥାଏ । ଏପରି ଲୋକ ଦେଖିବାକୁ ମିଳନ୍ତି ଯେଉଁମାନେ ନିଜର କୌଣସି ଲକ୍ଷ୍ୟ ହାସଲ ପାଇଁ ଆପଣା ଜୀବନ ବିପନ୍ନ କରିବେ, ଭୋକଶୋଷର କଷ୍ଟ ସହିବେ, ମାତ୍ର ଅନ୍ୟର ଚିନ୍ତା ଏମାନଙ୍କର ନ ଥାଏ । ଆମେ ସମାଜର ଅଙ୍ଗ ଏବଂ ତାହା ପ୍ରତି, ଅର୍ଥାତ୍ ଅନ୍ୟ ଲୋକମାନଙ୍କ ପ୍ରତି, ଆମର କୌଣସି କର୍ତ୍ତବ୍ୟ ଅଛି ଏପରି ଭାବନା ସେମାନଙ୍କର ନ ଥାଏ । ଏହି ରୋଗ ମାନବସମାଜକୁ ଫମ୍ପା କରିଚାଲିଛି । ଆଜି ଚାରିଆଡ଼େ ଆଧୁନିକ ସଭ୍ୟତାର ଚିତ୍କାର ଶୁଣାଯାଉଛି ଯେ, ତୁମେ ନିଜକଥା ଭାବ, କିପରି ଧନରେ, କ୍ଷମତାରେ, ସମସ୍ତଙ୍କଠାରୁ ଆଗରେ ରହିବ ସେଇଥିପାଇଁ ଉଦ୍ୟମ କର । ଯେ ପଛରେ ରହିଯାଇଛି, ରହିଯାଉ, ତାକୁ ଡାହାଣୀ ଖାଉ । ତାହା ତା'ର ଭାଗ୍ୟରେ ଅଛି । ତା' ପାଇଁ ଚିନ୍ତା କର ନାହିଁ । ରେଡ଼ିଓ, ଦୂରଦର୍ଶନ, ଖବରକାଗଜ ଆଦିରେ ବିଜ୍ଞାପନରୁ ଏହି ଶିକ୍ଷା ଗାଁ ଗାଁ ଯାଏ ପହଞ୍ଚି ଯାଉଛି ।

ଗୋଟିଏ ଘଟଣା ମନେପଡ଼ୁଛି, ବିଶ୍ୱବିଦ୍ୟାଳୟରେ ପଢୁଥିବା ଜଣେ ପିଲାର ମା କ୍ୟାନ୍‌ସର୍ ରୋଗରେ ପୀଡ଼ିତ ଥିଲେ, ମୃତ୍ୟୁଶଯ୍ୟାରେ ପଡ଼ିଥିଲେ । ତେଣୁ ପୁଅ ମା'ର ସେବାକରିବା ପାଇଁ ନିଜ ପାଠପଢ଼ା ଏକ ବର୍ଷ ପାଇଁ ବନ୍ଦ ରଖିଲା । ମୁଁ ଦେଖିଲି ଯେ ଖୁବ୍ ଭଲ ବଡ଼ ବଡ଼ ବିଦ୍ୱାନ ବ୍ୟକ୍ତି ଏହି ଯୁବକର ଏହି କାମକୁ ଭୁଲ୍ ବୋଲି ଭାବିଲେ । ତାହାର ପ୍ରଥମେ ନିଜର କ୍ୟାରିୟର୍ ବିଷୟରେ ଭାବିବାର ଥିଲା । ଏହା ହେଲା ଆଧୁନିକ ସଭ୍ୟତା । ତଥାପି ମଧ୍ୟ ସମାଜ ପ୍ରତି ଆମର କର୍ତ୍ତବ୍ୟର ଭାବନା, ଅନ୍ୟପ୍ରତି ମମତ୍ୱର ଭାବନା ସମ୍ପୂର୍ଣ୍ଣ ମରି ଯାଇ ନାହିଁ । ଏହାକୁ ବଞ୍ଚାଇ ରଖିବାକୁ ଓ ବିକଶିତ କରିବାକୁ ପଡ଼ିବ । ତଥା ସମାଜ ବ୍ୟବସ୍ଥାର ଏହା ମୁଖ୍ୟ ଆଧାର ହେବା ଦରକାର, ଏହା ମଧ୍ୟ ନିଜଠାରୁ ହିଁ ଆରମ୍ଭ କରିବାକୁ ପଡ଼ିବ । ବାଣ୍ଟିକରି ଖାଇବାର ଅଭ୍ୟାସ କରିବାକୁ ପଡ଼ିବ ।

ବିନୋବାଜୀ ଏହି ଭାବନାକୁ ଉତ୍ସାହିତ କରିବା ପାଇଁ ଭୂଦାନ-ଗ୍ରାମଦାନ ଆନ୍ଦୋଳନ ଆରମ୍ଭ କରିଥିଲେ । ଏହାର ପ୍ରାସଙ୍ଗିକତା ଏପର୍ଯ୍ୟନ୍ତ ମଧ୍ୟ ରହିଛି । ଟିକିଏ ଅଧିକ ଦାମ୍ ହେଲେ ବି ଖଦୀ ତଥା ଗ୍ରାମୋଦ୍ୟୋଗ ଜିନିଷ କିଣିବା ମଧ୍ୟ ବାଣ୍ଟି କରି ଖାଇବାର ଏକ ଉପାୟ । ଏହା ମଧ୍ୟ ମନେରଖିବା ଉଚିତ ।

ମଦ୍ୟ ତଥା ଅନ୍ୟ ନିଶାଦ୍ରବ୍ୟ ମଣିଷର ନିଜ ଉପରେ ଅଙ୍କୁଶ ରଖିବାର ଶକ୍ତିକୁ ନଷ୍ଟ କରିଥାଏ ଏବଂ ହିଂସାତ୍ମକ ଆଚରଣକୁ ପ୍ରୋତ୍ସାହନ ଦେଇଥାଏ । ଏ ସବୁର ଅଭ୍ୟାସରୁ ଲୋକଙ୍କୁ ମୁକ୍ତ କରିବା ହିଂସା ମୁକ୍ତି ଦିଗରେ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ପଦକ୍ଷେପ ହେବ ।

## ଅନ୍ୟାୟର ଅହିଂସକ ପ୍ରତିକାର

ଅହିଂସା ଶକ୍ତିର ବିକାଶ ପାଇଁ ଅନ୍ୟାୟର ପ୍ରତିକାରର ଅହିଂସାତ୍ମକ ଉପାୟ ଲୋକଙ୍କ ଆଗରେ ରଖିବାକୁ ପଡ଼ିବ । ଅନେକ ସମୟରେ ଅହିଂସକ ଉପାୟ ଲୋକଙ୍କୁ ଜଣା ନ ଥିବାରୁ ସେମାନେ ହିଂସାର ଆଶ୍ରୟ ନିଅନ୍ତି । କେତେବେଳେ ସତ୍ୟାଗ୍ରହ କିମ୍ବା ଆଇନ ଅମାନ୍ୟ ନାଁରେ ଏପରି କାମ କରନ୍ତି ଯାହା ପ୍ରକୃତରେ ହିଂସାର ହିଁ ସୌମ୍ୟ ରୂପ ହୋଇଥାଏ । ଏଥିପାଇଁ ନିଜର ଆଖପାଖର ଛୋଟ ଛୋଟ ଅନ୍ୟାୟ ଓ ଶୋଷଣ, ଭେଦଭାବ ଆଦିର ପ୍ରତିକାର ନିମନ୍ତେ ଅହିଂସ ପଦକ୍ଷେପ ନେବା ଆବଶ୍ୟକ । ଏଥିରେ ଏକଥା ମନେରଖିବା ଭଲ ଯେ ଅହିଂସାର ଶକ୍ତି ଆତ୍ମଶକ୍ତିରୁ ହିଁ ମିଳେ । ନୈତିକ ଆଚରଣ ଓ ଜୀବନକୁ ଉତ୍ତରୋତ୍ତର ପବିତ୍ର କରିବା ଦ୍ୱାରା ଆତ୍ମଶକ୍ତି ବଢ଼େ । ଏଥିପାଇଁ ସେବକ ନିଜେ ଯତ୍ନ କରିବା ତଥା ଲୋକଙ୍କ ମଧ୍ୟରେ ଏହାର ଅଭ୍ୟାସ ବଢ଼ାଇବା ପାଇଁ ଚେଷ୍ଟା କରିବା ଭଲ ।

ଗଣତନ୍ତ୍ରରେ ସତ୍ୟାଗ୍ରହୀ ପ୍ରତିକାର ଅର୍ଥାତ୍ ଆଇନ ଅମାନ୍ୟ ଆଦିର ସ୍ଥାନ ଅଛି କି ନାହିଁ ଏହାକୁ ନେଇ ବହୁ ଚର୍ଚ୍ଚା ଚାଲିଛି । ଏହି ସମ୍ବନ୍ଧରେ ଗାନ୍ଧୀଜୀ, ଜୟପ୍ରକାଶଜୀ ଆଦିଙ୍କ ବିଚାର ମଧ୍ୟ ଆମ ଆଗରେ ରହିଛି । ଏଠାରେ ଏତିକି କୁହାଯାଇପାରେ ଯେ ଅହିଂସ ଆନ୍ଦୋଳନର ଅଙ୍ଗ ରୂପେ ନ୍ୟାୟପାଳିକାର ସାହାଯ୍ୟ ନେବା ମଧ୍ୟ ଏକ ଯଥୋଚିତ ପଦକ୍ଷେପ ।

## ସାଂପ୍ରଦାୟିକ ଓ ଜାତିଗତ ହିଂସାର ମୁକାବିଲା

ଯେପରି ଅନ୍ୟାୟ, ଶୋଷଣ ଭେଦଭାବ ଆଦି ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ହିଂସାର ପ୍ରତିରୋଧ ପାଇଁ ଅହିଂସାର ଶକ୍ତିର ବିକାଶ କରିବା ଦରକାର, ସେହିପରି ସାଂପ୍ରଦାୟିକ, ଜାତିଗତ, ଭାଷାଗତ ତଥା ସେହି ପ୍ରକାରର ଅନ୍ୟ ଉତ୍ତେଜନା ଓ ହିଂସାତ୍ମକ ଉପଦ୍ରବର ପ୍ରତିରୋଧ ପାଇଁ ମଧ୍ୟ ଉଦ୍ୟମ କରିବାକୁ ହେବ । ଆଖ-

ପାଖରେ କେଉଁଠି ହିଂସାକାଣ୍ଡ ଘଟିଲି ତ ନିଜ ଜୀବନକୁ ବିପଦରେ ପକାଇ ମଧ୍ୟ ଏହାକୁ ଶାନ୍ତ କରିବାକୁ ଚେଷ୍ଟା କରିବାକୁ ହେବ । ଉପଦ୍ରବର ପୂର୍ବରୁ ବା ପରେ ଉତ୍ତେଜନାକୁ ଶାନ୍ତ କରି ପରସ୍ପର ସଦ୍‌ଭାବ ସ୍ଥାପିତ କରିବା ଏକ ବଡ଼ କାମ, ନଚେତ୍ ଆଜି ଦେଶରେ କେତେକ ଗୋଷ୍ଠୀଙ୍କ ଦ୍ୱାରା ଯେଉଁ ପ୍ରକାରର ସଙ୍କୀର୍ଣ୍ଣତା ତଥା ବିଦ୍ୱେଷର ପ୍ରଚାର ହେଉଛି ତାହା ଦେଶ ପକ୍ଷରେ ଅତି ବିପଦ୍‌ଜନକ । ଏହି ପ୍ରଚାରକୁ ଅକାମୀ କରିବା ପାଇଁ ତ ସମସ୍ତଙ୍କୁ ପ୍ରାଣପଣେ ଲାଗିପଡ଼ି କାମ କରିବାକୁ ପଡ଼ିବ । ଏହାର କଳା ଆୟତ୍ତ କରିବାପାଇଁ ସାଧନା କରିବାକୁ ପଡ଼ିବ । ଯେଉଁଠି କିଛି ପ୍ରଶ୍ନ ବା ଦାବୀକୁ ନେଇ ହିଂସା ଓ ଅଶାନ୍ତି ବ୍ୟାପିଛି, ଯେପରି ପଞ୍ଜାବ, କାଶ୍ମୀର ତଥା ଆସାମରେ ସେଠାରେ ସମସ୍ୟା ସମାଧାନ କିପରି କରିହେବ ଓ ଶାନ୍ତି ସ୍ଥାପନ କରିହେବ ତାର ଉପାୟ ସର୍ବୋଦୟ ଆନ୍ଦୋଳନକୁ ସାମୂହିକ ଭାବରେ ଚିନ୍ତା କରି ବାହାର କରିବାକୁ ପଡ଼ିବ, କିନ୍ତୁ ଗୋଟିଏ କଥା ସ୍ପଷ୍ଟ । ପ୍ରଥମେ ସେହିସବୁ ସ୍ଥାନମାନଙ୍କରେ ସର୍ବୋଦୟ ଆନ୍ଦୋଳନକୁ ନିଜର ଆସ୍ଥାନ ଦୃଢ଼ କରିବାକୁ ହେବ । ଆଜି ଏହି ଉଦନୋଟି ଅଞ୍ଚଳରେ ସର୍ବୋଦୟର ସଂଗଠନ ଅତି ଦୁର୍ବଳ । ଏସବୁଠାରେ ସ୍ଥାନେ ସ୍ଥାନେ ସ୍ୱୟଂସେବକ ସଂଗ୍ରହ ଓ ସେମାନଙ୍କର ଶିବିର ହେବା ଉଚିତ । ପ୍ରାଥମିକ ସର୍ବୋଦୟ ମଣ୍ଡଳ ଗଢ଼ି ଉଠିବା ଦରକାର । ଏମାନେ ସର୍ବୋଦୟର ବିଚାର ଲୋକଙ୍କୁ ବୁଝାଇବେ ଏବଂ ସେହି ଅନୁସାରେ ନିଜେ ଆଚରଣ କରିବେ । ଏହି ବିଷୟରେ ଆମର ବିଚାର ଏହି ପ୍ରକାରର :

କ୍ଷମତାର କେନ୍ଦ୍ରୀକରଣ ଦ୍ୱାରା ଲୋକଙ୍କ ନିଜର ଅଭିକ୍ରମକୁ ଦବାଇ ଦିଆଯାଏ । ଦୂରରୁ ଶାସନ କରାଯାଉଥିବାରୁ ଅନ୍ୟାୟ ଓ ଶୋଷଣ ବଢ଼ି ଚାଲେ । ତେଣୁ ଗ୍ରାମସ୍ୱରାଜ୍ୟର ଆଦର୍ଶ ଅନୁସାରେ କ୍ଷମତାର ବ୍ୟାପକ ବିକେନ୍ଦ୍ରୀକରଣ ହେବା ଉଚିତ ।

ରାଜନୀତିରେ ନୈତିକତା ଲୋପ ପାଇ ଗଲାଣି । ଜନତାକୁ ଧୋକା ଦେବା କ୍ଷମତାରେ ଥିବା ଲୋକଙ୍କର ଅଭ୍ୟାସ ହୋଇଗଲାଣି । ଉଦାହରଣ ସ୍ୱରୂପ ପଞ୍ଜାବରେ ଚଣ୍ଡିଗଡ଼, ନଦୀ ପାଣିର ବଣ୍ଟନ ଆଦି ବିଷୟରେ ଯାହା ସବୁ ଫଇସଲା ହେଲା ତାହା ଲାଗୁ ହେଲା ନାହିଁ । ନିର୍ବାଚିତ ସରକାରକୁ ମନୋମୁଖୀ ଭାବେ ବରଖାସ୍ତ କରାଗଲା । କାଶ୍ମୀରରେ ମୁକ୍ତ ଓ ସ୍ୱଚ୍ଛ ନିର୍ବାଚନ ହେବାକୁ ଦିଆଗଲା ନାହିଁ । ହାତରୁ କ୍ଷମତା ଚାଲିଯିବା ଭୟରେ ଭେଦଭାବର ଆଶ୍ରୟ ନିଆଗଲା । ଇତ୍ୟାଦି ।

ବିଚ୍ଛିନତାବାଦର ପ୍ରତିରୋଧ କରିବା । ଆଜି ଯେତେ ୟୁରୋପରେ ପୂର୍ବରୁ ନିଜ ନିଜ ଭିତରେ ଭୟଙ୍କର ଭାବରେ ଲଢ଼ିଥିବା ଦେଶମାନେ ଏକାଠି ହୋଇ

ଗୋଟିଏ ଦେଶ ଭଳି ଚଳୁଛନ୍ତି ସେତେବେଳେ ଭାରତକୁ ଖଣ୍ଡ ଖଣ୍ଡ କରି ବାଣ୍ଟିଲେ କାହାର ଲାଭ ହେବ ? ସୋଭିଏତ୍ ସଂଘକୁ ଜବରଦସ୍ତି ଏକାଠି ରଖାହୋଇଥିଲା । ଗଣତନ୍ତ୍ର ଆସିଲା ମାତ୍ରେ ତାହା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ନିଜକୁ ସ୍ୱାଧୀନ ମଣୁଥିବା ରାଜ୍ୟ ବା ଦେଶ ଆଜି ସ୍ୱେଚ୍ଛାରେ ଦେଶର ସୁରକ୍ଷା ତଥା ଆର୍ଥିକ ସହଯୋଗ ପାଇଁ ଏକାଠି ହେବାକୁ ଲାଗିଛନ୍ତି ।

ହିଂସାତ୍ମକ କାର୍ଯ୍ୟାବଳୀରୁ ଅଲଗା ରହିବା । ହିଂସା ଦ୍ୱାରା ଆଜି କୌଣସି ହେଲେ ସମସ୍ୟାର ସନ୍ତୋଷଜନକ ସମାଧାନ ହୋଇ ନାହିଁ । ଯଦି ହିଂସାତ୍ମକ ଆନ୍ଦୋଳନ ସଫଳ ହୁଏ, ତେବେ କ୍ଷମତା ତା'ର ହାତକୁ ଯିବ ଯେ ଅଧିକ ବଳବାନ ହୋଇଥିବ । ଗଣତନ୍ତ୍ର ରହିବ ନାହିଁ । ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ, ଯଥା, ପୁଞ୍ଜିପତି, ବଡ଼ ଜମି ମାଲିକ, ଅମଲାତନ୍ତ୍ର ଆଦିଙ୍କର ହିଁ ରାଜତ୍ୱ ଚାଲିବ ।

ଏହା ସଙ୍ଗେ ସଙ୍ଗେ ସ୍ୱଦେଶୀ, ସ୍ୱାବଲମ୍ବନ, ଆର୍ଥିକ ବିକେନ୍ଦ୍ରୀକରଣ, ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ବିରୋଧ ଓ ସର୍ବୋଦୟର ଅନ୍ୟ କାର୍ଯ୍ୟକ୍ରମର ପ୍ରଚାର ତ ଆମେ କରି ଚାଲିବା । ଏହାର ପ୍ରତିଫଳ ଶୀଘ୍ର ଦେଖିବାକୁ ମିଳିବ ନାହିଁ । ଲୋକେ ଆମକୁ ଉପହାସ କରିପାରନ୍ତି ଅଥବା ବିରୋଧ ବି କରିପାରନ୍ତି, କିନ୍ତୁ ସମସ୍ୟା ସହିତ ସଂଘର୍ଷ କରିବାର ଶକ୍ତି ଆମକୁ ସୃଷ୍ଟି କରିବାକୁ ହେବ ଓ ଏହିପରି ନିଜର ଆସ୍ଥା ତଥା ଦୃଢ଼ତାର ପରିଚୟ ଆମକୁ ଦେବାକୁ ପଡ଼ିବ ।

ପଞ୍ଜାବ, କାଶ୍ମୀର ତଥା ଆସାମରେ ଆଜିର ପରିସ୍ଥିତି ଶେଷ ସୀମାରେ ପହଞ୍ଚିଗଲାଣି । କିନ୍ତୁ ମନେ ରଖିବାକୁ ହେବ ଯେ ସାମ୍ପ୍ରଦାୟିକତା ବା ଜାତିଗତ ବିବାଦ ଯୋଗୁ ଭାରତର ଯେ କୌଣସି ସ୍ଥାନରେ ଏପରି ପରିସ୍ଥିତି ସୃଷ୍ଟି ହୋଇପାରେ । ବିହାର ତଥା ଅନ୍ଧ୍ରପ୍ରଦେଶର ପରିସ୍ଥିତି କିଛି କମ୍ ଗୁରୁତର ନୁହେଁ । ସେଠାରେ ବିଚ୍ଛିନ୍ନ ହେବାର ଦାବୀ ନାହିଁ । ସେଥିପାଇଁ ସେମାନଙ୍କ ଆଡ଼କୁ ଦୃଷ୍ଟି କମ୍ ଯାଉଛି । ଏହି ସବୁ ଦୃଷ୍ଟିରୁ ଦେଶରେ ପ୍ରତ୍ୟେକ ସ୍ଥାନରେ ସର୍ବୋଦୟ ମଣ୍ଡଳ ତଥା ଶାନ୍ତିସେନାର ସଂଗଠନ ଆରମ୍ଭ ହେବା ଆବଶ୍ୟକ । ମନେରଖିବା ଉଚିତ ଯେ କେବଳ ହିଂସାର ପ୍ରତିରୋଧ କରିବା ଆମର ଲକ୍ଷ୍ୟ ନୁହେଁ । ଆମେ ଅହିଂସ ବିପ୍ଳବ ମଧ୍ୟ ଚାହୁଁ । ସେଥିପାଇଁ ଆମକୁ କାମ କରିବାକୁ ହେବ । ବିପ୍ଳବର ପ୍ରକ୍ରିୟା ଯେତିକି ଯେତିକି ଆଗେଇବ, ହିଂସାର ପ୍ରକୋପ ସେତିକି ସେତିକି ଊଣା ହେବ ।

[ ବିଃଦ୍ରଃ ଏହି ପ୍ରବନ୍ଧରେ ଦେଶର ସୁରକ୍ଷା ପାଇଁ ଲଢ଼ା ହେଉଥିବା ଯୁଦ୍ଧର ଆଲୋଚନା ମୁଁ କରିନାହିଁ । ଆଜି ଦୁନିଆରେ ଯୁଦ୍ଧ ଓ ଏଥିପାଇଁ ପ୍ରସ୍ତୁତି ଏକ ସବୁଠାରୁ ବଡ଼ ଏବଂ ସର୍ବନାଶୀ ହିଂସାର ଉଦ୍‌ଗମ ସ୍ଥଳ । ତା'ର ଆଲୋଚନା ଅଲଗା କରିବାକୁ ହେବ । ]



# ସର୍ବଶ୍ରେଷ୍ଠ ଶକ୍ତି

- ଅହିଂସା ବୋଇଲେ ମନୁଷ୍ୟ ପକ୍ଷେ ଯାହା ସମ୍ଭବ ହୋଇପାରେ ସେହିଭଳି ପରିପୂର୍ଣ୍ଣ ଆତ୍ମଶକ୍ତିକୁ ବୁଝାଏ ।

- ଅନ୍ୟାନ୍ୟ କ୍ଷେତ୍ରରେ ଦୁଇ ସମାନ ବ୍ୟକ୍ତିଙ୍କ ମଧ୍ୟରେ ନଜର ଦେଲେ ଦେଖାଯିବ ଯେ ଅହିଂସକ ବ୍ୟକ୍ତିର ହିଂସାଆଚରଣ କରିବାର ଶକ୍ତି ଅନୁପାତରେ ତାହାର ଅହିଂସାର ଶକ୍ତି ପ୍ରକାଶ ପାଏ; ମାତ୍ର ତାହାର ହିଂସା କରିବାର ଇଚ୍ଛା ଅନୁପାତରେ ଏହା ପ୍ରକାଶ ପାଏ ନାହିଁ ।

- ହିଂସା-ଶକ୍ତିଠାରୁ ଅହିଂସାଶକ୍ତି ସର୍ବଦା ଉତ୍କୃଷ୍ଟ, ଅର୍ଥାତ୍ ଜଣେ ବ୍ୟକ୍ତି ହିଂସା ଆଚରଣ କରିଥିଲେ ଯେତିକି ଶକ୍ତି ପ୍ରକାଶ କରିପାରିଥାନ୍ତେ, ସେ ଅହିଂସ ହେଲେ ତା'ଠାରୁ ନିଶ୍ଚୟ ଅଧିକ ଶକ୍ତିର ପରିଚୟ ଦେଇପାରିବେ ।

- ଅହିଂସାରେ ପରାଜୟ ବୋଲି କିଛି ଜିନିଷ ନାହିଁ । ହିଂସାର ପରିଣାମ ସୁନିଶ୍ଚିତ ଭାବରେ ପରାଜୟ ।

- ଅହିଂସାର ପରିଣାମ ସୁନିଶ୍ଚିତ ଭାବରେ ଜୟଲାଭ, ଯଦି ଆମେ ଜୟଲାଭ ଶବ୍ଦଟି ଅହିଂସା ସମ୍ବନ୍ଧେ ପ୍ରୟୋଗ କରିପାରୁଁ । କାରଣ, ବାସ୍ତବରେ ଯେଉଁ କ୍ଷେତ୍ରରେ ପରାଜୟ-ଭାବ ମନକୁ ଆସେ ନାହିଁ; ସେ କ୍ଷେତ୍ରରେ ଜୟଲାଭ ଭାବର ମଧ୍ୟ ଉଦ୍ରେକ ହୁଏ ନାହିଁ ।

— ମହାତ୍ମା ଗାଂଧୀ

---

ମୁଦ୍ରଣ—ଗ୍ରାମସେବକ ସମବାୟ ପ୍ରକାଶନ ଲି:, କଟକ-୨

ମୂଲ୍ୟ—ଚଉଦଟଙ୍କା ମାତ୍ର